# କଳାବତୀ

ରଚନା—ସ୍ୱର୍ଗୀୟ ଅପର୍ଣ୍ଣା ପଣ୍ଡା

ସଂପାଦନା ଓ ସମୀକ୍ଷା

ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା

ପ୍ରକାଶକ

ପୁସ୍ତକ ଭଣ୍ଡାର

ଚହ୍ଲାପୁର · କଟକ

# କଳାବତୀ

ଦ୍ୱିତୀୟ ମୁଦ୍ରଣ—୧୯୮୧
ପ୍ରଥମ ପ୍ରକାଶ—୧୯୦୨

ପ୍ରକାଶକ—
**ପୁସ୍ତକ ଭଣ୍ଡାର**
ବ୍ରହ୍ମପୁର-୧,
ବାଙ୍କାବଜାର, କଟକ-୨

ମୁଦ୍ରାକର —
ସନ୍ତୋଷ ପ୍ରିଣ୍ଟର୍ସ
ବ୍ରହ୍ମପୁର

ମୂଲ୍ୟ – ଛ' ଟଙ୍କା

**KALABATI**

[A Story by late Aparna Panda]

*Second Edition-1981*
*First Edition-1902*

*Published by*
**PUSTAK BHANDAR**
Berhampur-1.
Banka Bazar, Cuttack-2.

*Printed by*
SANTOSH PRINTERS
Berhampur

**Price—Rs. Six only.**

# ମୁଖବନ୍ଧ

ଚକ୍ ଚକ୍ ଝଟକୁଥିବା ସବୁ ଜିନିଷ ସୁନା ନୁହେଁ; 'ଉପନ୍ୟାସ' ବୋଲି କଥିତ ସବୁ ବହି ଉପନ୍ୟାସ ନୁହେଁ । ଆମ ସାହିତ୍ୟରେ କେତେକ କାହାଣୀ ବା ବଡ଼ଗଳ୍ପକୁ 'ଉପନ୍ୟାସ' ନାମରେ ଚଳାଇ ଦିଆଯାଇ ଥିବାର ପରିଲକ୍ଷିତ ହୁଏ । ଉଭୟେ ଲେଖକ ତଥା ସମାଲୋଚକ ଏହି କାର୍ଯ୍ୟ କରିଥିବାର ଜଣାପଡ଼େ । ଅନବଧାନବଶତଃ ବା ଆପଣା ଅଜ୍ଞାତସାରରେ ଲେଖକ ଏହା କରି ଥାଇପାରନ୍ତି । କିନ୍ତୁ ସମାଲୋଚକ ପରୀକ୍ଷା କରି ଦେଖିବାର କଥା—ବହିଟି ପ୍ରକୃତରେ ଉପନ୍ୟାସ କିମ୍ବା କାହାଣୀ ! ପ୍ରଚଳିତ ମାନଦଣ୍ଡରେ କେଉଁ ରଚନାଟି କି ଧରଣର ସାହିତ୍ୟକୃତି, ତାହା ସାଧାରଣତଃ ସମାଲୋଚକ ଏବଂ ସାହିତ୍ୟ-ପତ୍ରିକାର ସମ୍ପାଦକମାନେ ବିଚାର କରି ଦେଖିଥାଆନ୍ତି । ଏହା ସତ୍ତ୍ୱେ ଆମ ସାହିତ୍ୟର କେତେକ କାହାଣୀକୁ ଉପନ୍ୟାସ ବୋଲି ପ୍ରଚାର କରାଯାଇଥିବା ବସ୍ତୁସ୍ଥିର କଥା । ଉଦାହରଣ ସ୍ୱରୂପ—'ମୁକୁର' ପତ୍ରିକାର ପ୍ରଥମ ଭାଗ ଦଶମ / ଏକାଦଶ ସଂଖ୍ୟାରୁ ଧାରାବାହିକ ପ୍ରକାଶ ପାଇଥିବା 'କବିତ୍ୱ ବିସର୍ଜନ' ଉପନ୍ୟାସ ନାମରେ ଚିହ୍ନିତ ହୋଇଥିଲେ ହେଁ, ତାହା ପ୍ରକୃତରେ ଏକ ବଡ଼ ଗଳ୍ପ ବା କାହାଣୀ । କୁନ୍ତଳାକୁମାରୀଙ୍କର ପରଶମଣି, ଭ୍ରାନ୍ତି, କାଳିବୋହୂ, ନଅଭଉଣୀ ଗୋଟିଏ ଗୋଟିଏ କାହାଣୀ ହୋଇଥିଲେ ମଧ୍ୟ ଉପନ୍ୟାସ ଅଭିଧାରେ ଚିହ୍ନିତ ତଥା ଆଲୋଚିତ ହୋଇଛି । ସେହିପରି ଅପର୍ଣ୍ଣା ପଣ୍ଡାଙ୍କ 'କଳାବଙ୍ଗ' ଏକ ବଡ଼ ଗଳ୍ପ, କିନ୍ତୁ ସମାଲୋଚକ-ଦୃଷ୍ଟିରେ ରଚନାଟିର ଜାତି ଧରାପଡ଼େ ନାହିଁ; ତେଣୁ ଉପନ୍ୟାସ ପର୍ଯ୍ୟାୟରେ ତାହାକୁ ଅବସ୍ଥାପିତ କରାଯାଇଛି ।

କାହାଣୀ ବା ବଡ଼ ଗଳ୍ପ, ଉପନ୍ୟାସର ସମଗୋତ୍ରୀୟ ହୋଇପାରେ । ତଥାପି ସମଗୋତ୍ରୀ ମଣିଷଙ୍କ ମଧ୍ୟରେ ପାର୍ଥକ୍ୟ ଥିବାପରି ଏମାନଙ୍କ ମଧ୍ୟରେ କେତେକ ପାର୍ଥକ୍ୟ ରହିଛି । ଆଖ୍ୟାନ-ଭାଗର ଦୈର୍ଘ୍ୟ ଦୃଷ୍ଟିରୁ

କାହାଣୀଠାରୁ ଉପନ୍ୟାସ ତ ବଡ଼ ହେବ ! ତାହା ବ୍ୟତୀତ ଏଥିରେ ଶାଖା ପ୍ରଶାଖାଯୁକ୍ତ ପ୍ଲଟ୍ ବା କଥାନକ, ଜଟିଳ ଘଟଣା-ବିନ୍ୟାସ, ସମାଜ-ଜୀବନର ବ୍ୟାପକ ବିସ୍ତୃତ ପଟ୍ଟଭୂମି, ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାର ବୈଶିଷ୍ଟ୍ୟ ଅଧିକ ସ୍ଥାନଲାଭ କରିଥାଏ । ସାଧାରଣତଃ ଏହି ପ୍ରଚଳିତ ମାନଦଣ୍ଡରୁ ସହଜ କାହାଣୀ ଓ ଉପନ୍ୟାସ ମଧ୍ୟରେ ପାର୍ଥକ୍ୟ ନିରୂପିତ ହୋଇଥାଏ । ମାର୍କିନ୍ କଥାକାର ହେମିଂୱେଙ୍କର The Old Man and the Sea (୧୯୫୨) ସେହି ଦୃଷ୍ଟିରୁ ସମାଲୋଚକଙ୍କଦ୍ୱାରା କାହାଣୀ ବା ବଡ଼ ଗଳ୍ପରୂପେ ଚିହ୍ନିତ ହୋଇଛି, କିନ୍ତୁ ତାଙ୍କର For whom the Bell tolls (୧୯୪୦) ଉପନ୍ୟାସ । ଆମ ସାହିତ୍ୟରେ 'ଉପନ୍ୟାସ' ନାମରେ ଚିହ୍ନିତ ସେହିପରି ଏକ ଉଲ୍ଲେଖଯୋଗ୍ୟ ଉଚ୍ଚକୋଟିର କାହାଣୀ ବିଷୟରେ ବର୍ତ୍ତମାନ କିଞ୍ଚିତ ଆଲୋଚନା କରାଯାଉଛି ।

ପ୍ରାୟ ପଞ୍ଚସ୍ତରୀ ବର୍ଷ ତଳେ ପ୍ରକାଶିତ ଏହି ପୁରୁଣା ବହିଟିକୁ ସ୍ୱୟଂ ଲେଖକ କେଉଁଠି 'ଉପନ୍ୟାସ' ବୋଲି କହିଥିବାର ଜଣାନାହିଁ । * ବରଂ ଭୂମିକାରେ ଶ୍ରୀ ପଣ୍ଡା ଏହାକୁ ଖାଲି 'ଗଦ୍ୟ' ବୋଲି ନାମିତ କରି ଲେଖିଛନ୍ତି—"ସଙ୍ଗୀତ ଓ ପଦ୍ୟ ଲେଖିବାର ଅଭ୍ୟାସ ଅଛି, ମାତ୍ର ଗଦ୍ୟ ଲେଖିବାର ଅଭ୍ୟାସ ନଥିଲା । ଗଦ୍ୟ ଲେଖିବାର ଏହା ମୋହର

* **କଳାବତୀ**—ଶ୍ରୀ ଅପର୍ଣ୍ଣା ପଣ୍ଡା, ପାରଳାକିମେଡ଼ି ଗଜପତି ପ୍ରେସରେ ଦୟାନିଧି ପଟ୍ଟନାୟକଙ୍କ ଦ୍ୱାରା ମୁଦ୍ରିତ (୧୯୦୨ ମସିହା), କ୍ଷୁଦ୍ରତମ (ଫୁଲସ୍କେପ ୧/୮) ଆକୃତିର ବହିର ମୋଟ ପୃଷ୍ଠା ସଂଖ୍ୟା ୯୪ । ବହିର ମୂଲ୍ୟ ଦିଆଯାଇ ନାହିଁ ।

ବହିଟିର 'ଉତ୍ସର୍ଗ ପତ୍ର' ଏହିପରି:—"ଯେ ଉତ୍କଳ ହିତାକାଂକ୍ଷୀ, ସ୍ୱଦେଶପ୍ରିୟ, ଉତ୍କଳୀୟଙ୍କ ମଙ୍ଗଳ ସାଧନ ନିମନ୍ତେ ପ୍ରାଣପଣରେ କାର୍ଯ୍ୟକଳାପ ସାଧନ କରିବାକୁ ସଂକଳ୍ପ କରିଅଛନ୍ତି, ଯେ ଉତ୍କଳ ସାହିତ୍ୟର ଅଭାବ ମୋଚନାର୍ଥେ ସଙ୍ଗୀତ ଓ ନାଟକମାନ ରଚନା କରି କଳ୍ପନା ରାଜ୍ୟରେ ନିଜେ ଲେଖନୀ ଦଣ୍ଡ ପରିଚାଳନ କରୁଅଛନ୍ତି, ଯେ ଉତ୍କଳ ସାହିତ୍ୟ ସେବକମାନଙ୍କୁ ଉତ୍ସାହ ପ୍ରଦାନ କରିବାରେ ତ୍ରୁଟି କରନ୍ତି ନାହିଁ ଏବଂ ଯେ ନ୍ୟାୟର ପକ୍ଷପାତୀ, ସେହି ଗଙ୍ଗବଂଶାବତଂସ ମହାରାଜ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ କରକମଳରେ ଏହି ପୁସ୍ତକଟି ବିନୀତ ଭାବରେ ଅର୍ପଣ କଲି ।"

ପ୍ରଥମ ଉଦ୍ୟମ; ଏଥିରେ ଭାଷାଗତ ଦୋଷ ଅନେକ ଥାଇପାରେ । ମହାଜନମାନେ ଦୟାପୂର୍ବକ ଦୋଷ ଦେଖାଇଦେଲେ, ଦ୍ୱିତୀୟ ସଂସ୍କରଣରେ ପରିମାର୍ଜନା କରିଦେବି ।" ଲେଖକଙ୍କ ଜୀବଦ୍ଦଶାରେ ବହିଟିର ବୋଧହୁଏ ଦ୍ୱିତୀୟ ସଂସ୍କରଣ ହୋଇ ପାରିନାହିଁ । ପ୍ରଥମ ସଂସ୍କରଣର ବହି ବର୍ତ୍ତମାନ ଦୁଷ୍ପ୍ରାପ୍ୟ । କାହାଣୀଟି ମଧ୍ୟରେ ଗତ ଶତାବ୍ଦୀର ଶେଷଭାଗ ଓ ଚଳିତ ଶତାବ୍ଦୀର ପ୍ରାରମ୍ଭ ଭାଗର ସାମାଜିକ ତଥା ଜାତୀୟ ଜୀବନର ଆଲେଖ୍ୟ ଅଙ୍କିତ ହୋଇଥିବାରୁ ଏବଂ ଆମର ଆଧୁନିକ କଥା ସାହିତ୍ୟର ଏହା ଅନ୍ୟତମ ପ୍ରାଥମିକ ରଚନା ହୋଇଥିବାରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ; ସେହି ଦୃଷ୍ଟିରୁ ବର୍ତ୍ତମାନ ପାଠକ-ସମାଜ ପାଇଁ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରାଯାଉଛି ।

ପ୍ରକୃତରେ 'କଳାବତୀ' ଉପନ୍ୟାସ ନୁହେଁ, ତେଇଶଗୋଟି ପରିଚ୍ଛେଦବିଶିଷ୍ଟ ଏକ କାହାଣୀ ବା ବଡ଼ ଗଳ୍ପ । ବହିଟି ପଢ଼ିସାରିଲା ପରେ ଏହାର ବଂଶାଧିକ ବର୍ଣ୍ଣିତ ଚରିତ୍ର ମଧ୍ୟରେ ଏକମାତ୍ର କଳାବତୀ ଚରିତ୍ରଟି ପାଠକ ମନରେ ରେଖାପାତ କରିଥାଏ । ମଧ୍ୟପ୍ରଦେଶ ରାୟପୁରର ଜନୈକା ରୂପସୀ, ଗୁଣବତୀ ଝିଅ କଳାବତୀର ରୋମାଞ୍ଚକର ଦୁଃସାହସିକ ଭାରତ-ପର୍ଯ୍ୟଟନ ହିଁ ରଚନାଟିର କଥାବସ୍ତୁ । ସେହି ଦୃଷ୍ଟିରୁ ଏହା ମଧ୍ୟ ଏକ ପ୍ରକାର ଭ୍ରମଣ-କାହାଣୀ ବୋଲି ଭ୍ରମ ହୋଇପାରେ ।

ଶ୍ରୀ ଅପର୍ଣ୍ଣା ପଣ୍ଡା (୧୮୭୭ ? —୧୯୩୪) ଆମ ସାହିତ୍ୟ-ଇତିହାସରେ ଏକ ସୁପରିଚିତ ନାମ । ରାଜ୍ୟର ଅନ୍ୟତମ ସଂସ୍କୃତିକ ପୀଠ ପାରଳାଖେମୁଣ୍ଡିରେ ତାଙ୍କର ଆବିର୍ଭାବ ହୋଇଥିଲା । କିଛିକାଳ ଶିକ୍ଷକ ଭାବରେ ସେ କର୍ମଜୀବନ ଅତିବାହିତ କରିଥିଲେ । ସେ ଥିଲେ ସ୍ୱଦେଶ-ପ୍ରେମୀ, ସଂସ୍କୃତିବିତ୍ ଏବଂ ବହୁଶାସ୍ତ୍ରଜ୍ଞ, ପଣ୍ଡିତ ବ୍ୟକ୍ତି । ଶ୍ରୀ ପଦ୍ମନାଭ ନାରାୟଣ ଦେବ ଓ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସହିତ ସେ ପୁନା ଜାତୀୟ କଂଗ୍ରେସ ଅଧିବେଶନରେ (୧୮୯୫ ମସିହା) ଓଡ଼ିଶାର ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । 'କଳାବତୀ' ବ୍ୟତୀତ ସେ କବି ଜୀବନୀ (୧୯୧୬), 'ଛନ୍ଦ ଚନ୍ଦ୍ରିକା' (୧୯୨୧), 'ଚରମାଳିକା ତତ୍ତ୍ୱବୋଧିନୀ' (୧୯୩୧) ପ୍ରଭୃତି

ଗ୍ରନ୍ଥ ରଚନା କରିଛନ୍ତି । 'ଛନ୍ଦ ଚନ୍ଦ୍ରିକା' ଓଡ଼ିଆ ଛନ୍ଦ ସମ୍ପର୍କୀୟ ଆଲୋଚନାର ଏକ ପ୍ରାଥମିକ ଗ୍ରନ୍ଥ । ଦକ୍ଷିଣ ଓଡ଼ିଶାରେ ସେତେବେଳେ ଓଡ଼ିଆ ଭାଷା, ଛନ୍ଦ ବା ରାଗରାଗିଣୀ ସମ୍ପର୍କରେ ଯେ ପ୍ରଚୁର ଆଲୋଚନା-ଚର୍ଚ୍ଚା ଚାଲିଥିଲା, ରଘୁନାଥ ପରିଚ୍ଛା, ଗୋପୀନାଥ ନନ୍ଦ, ଶ୍ୟାମସୁନ୍ଦର ରାଜଗୁରୁ, ଅପର୍ତ୍ତି ପଣ୍ଡା ପ୍ରମୁଖଙ୍କର ରଚନାଗୁଡ଼ିକରୁ ତାହାର ପ୍ରମାଣ ମିଳେ । ଶ୍ରୀ ପଣ୍ଡାଙ୍କର 'ରାଗମାଳିକା ତତ୍ତ୍ୱବୋଧିନୀ' ମଧ୍ୟ ଓଡ଼ିଆ ରାଗମାଳୀ, ପ୍ରବନ୍ଧ ସଙ୍ଗ୍ରହ ଓ ସଙ୍କଳନ କ୍ଷେତ୍ରରେ ଏକ ପ୍ରାଥମିକ ଉଦ୍ୟମ । ଏଥିରେ ପ୍ରତ୍ୟେକ ରାଗକୁ ସାନ ସାନ ଗଳ୍ପ ବା ଉପାଖ୍ୟାନ ସାହାଯ୍ୟରେ ବ୍ୟାଖ୍ୟା କରାଯାଇଛି । ୧୯୦୫ ମସିହା ସୁଦ୍ଧା ଶ୍ରୀ ପଣ୍ଡା ରାଗଗୁଡ଼ିକର ସଙ୍ଗ୍ରହ ଓ ସଙ୍କଳନ କାର୍ଯ୍ୟ ଶେଷ କରିଥିଲେ ମଧ୍ୟ, ଅସୁବିଧାବଶତଃ ୧୯୩୦ ମସିହା ପର୍ଯ୍ୟନ୍ତ ଗ୍ରନ୍ଥଟି ପ୍ରକାଶ ପାଇ ପାରି ନଥିଲା । ମୋ ଜାଣିବାରେ—ଏହା ପୂର୍ବରୁ ଏ କ୍ଷେତ୍ରରେ ଏକମାତ୍ର ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ଥିଲା ୧୮୭୬ ମସିହାରେ ପ୍ରକାଶିତ ପଣ୍ଡିତ କପିଳେଶ୍ୱର ନନ୍ଦ ବିଦ୍ୟାଭୂଷଣଙ୍କ ଦ୍ୱାରା ସଙ୍କଳିତ 'ବୃହତ୍ ରାଗମାଳା' ।

ଏହା ବ୍ୟତୀତ କେତେଗୁଡ଼ିଏ ସଙ୍ଗୀତ, କବିତା ଶ୍ରୀ ପଣ୍ଡାଙ୍କ ଦ୍ୱାରା ରଚିତ ହୋଇଥିବାର ଜଣାଯାଉଛି । ମାତ୍ର ସେଗୁଡ଼ିକ ଏ ପର୍ଯ୍ୟନ୍ତ ଏହି ଆଲୋଚକ ଦେଖିବାର ସୁଯୋଗ ପାଇ ନାହିଁ ।

'କଳାବତୀ'ର ଗଳ୍ପ-ଗ୍ରନ୍ଥନ ବା ଘଟଣା-ବୟନ ଖୁବ ସୃଜୁ ଓ ସରଳ । କଳାବତୀ ଆପଣା ସଖୀ ଇନ୍ଦୁମତୀ ସହିତ ଦେଶ ପର୍ଯ୍ୟଟନରେ ବାହାରି ପ୍ରଥମେ ବଙ୍ଗଳାର ନବଦ୍ୱୀପରେ ପହଞ୍ଚିଲେ । ସେଠାରେ ଗଙ୍ଗା ସ୍ନାନ କଲେ ଏବଂ ନବଦ୍ୱୀପବାସୀଙ୍କ ଭକ୍ତି ଭାବ, ବିଦ୍ୟାଭ୍ୟାସ ଆଦି ଲକ୍ଷ୍ୟ କଲେ । ସେଠାରେ ସେ ଜାଣିଲେ ଯେ ବଙ୍ଗବାସୀମାନେ "ସାଧାରଣତଃ ସମସ୍ତେ ବିଦ୍ୟାଭ୍ୟାସ କରି ଧନଲୋଲୁପ ହୋଇ ସର୍ବଦା ଧନାର୍ଜନରେ ରତ ହୋଇଅଛନ୍ତି । ଏମାନେ କେବଳ ସ୍ୱାର୍ଥପର ଅଟନ୍ତି । ଏହି ନବଦ୍ୱୀପବାସୀମାନଙ୍କରୁ କେତେକ ନାମକୁ ମାତ୍ର ହରି-ଭକ୍ତ ଚିହ୍ନ ଧାରଣ କରିଅଛନ୍ତି । × × × ଏମାନେ ଆମ୍ଭର ପୂର୍ବ-ପ୍ରଥା ହରାଇ ପାଶ୍ଚାତ୍ୟ ବିଦ୍ୟାରେ ପାରଗ ହୋଇ ସର୍ବ ପ୍ରଥମତଃ ଭାରତରେ

ପାଶ୍ଚାତ୍ୟ ଖ୍ରୀଷ୍ଟାନ୍‌ମାନଙ୍କର ମଧ୍ୟ ବୋଲି ପରିଚୟ ଦେଇଅଛନ୍ତି ।"
ବଙ୍ଗୀୟମାନଙ୍କର ଧର୍ମ କର୍ମ ସମ୍ପର୍କରେ ସବୁ କଥା ଜାଣିବା ପାଇଁ ତା'ପରେ
କଳାବତୀ କଲିକତା ଗଲେ । କଲିକତାରେ ବାବୁମାନଙ୍କର ଇଂରାଜୀ ଶିକ୍ଷା
ମତ ଅନୁସରଣ, ବଙ୍ଗଳା ତଥା ଇଂରାଜୀ ନାଟ୍ୟଶାଳା, କାଳୀଙ୍କଠାରେ
ପଶୁବଳି, ବ୍ରାହ୍ମଧର୍ମର ଗତି ଇତ୍ୟାଦି ଦେଖିଲେ । କଲିକତା ଟାଉନ
ହଲ୍‌ରେ ଦିନେ ସେ ଏକ ହିନ୍ଦୁ ଧର୍ମ ସମ୍ବନ୍ଧରେ ବକ୍ତୃତା ଦେଇ
ସୁଧୀମଣ୍ଡଳୀରେ ପରିଚିତା ହେଲେ । ଖ୍ରୀଷ୍ଟଧର୍ମର ସ୍ୱରୂପ-ପ୍ରକୃତି ଜାଣିବା
ଉଦ୍ଦେଶ୍ୟରେ ଇଂରାଜୀ ବିଦ୍ୟା-ଶିକ୍ଷା ପାଇଁ କଲିକତାରେ ସେ ଛଅ ବର୍ଷ
ରହିଲେ ଏବଂ ବି. ଏ. ପାସ୍ ପରେ ବୃନ୍ଦାବନ ଯାତ୍ରା କଲେ । ବୃନ୍ଦାବନରେ
ରହି ମଠାଧିକାରୀ ବୈଷ୍ଣବ ବାବାଜୀମାନଙ୍କର ଭଣ୍ଡାମି ଓ ଭ୍ରଷ୍ଟାଚାର ଲକ୍ଷ୍ୟ
କଲେ ଏବଂ ନିଜେ ସେହିପରି ଜଣେ 'ତୁଳସୀ-ବଣିଆ-ବାଘ' କବଳରେ
ପଡ଼ି ଅଳ୍ପକେ ରକ୍ଷା ପାଇଗଲେ । ତତ୍ପରେ ଇନ୍ଦୁମତୀଙ୍କୁ ସଙ୍ଗରେ ନେଇ
କଳାବତୀ ହରିଦ୍ୱାର ଯାଇ କୁମ୍ଭମେଳା ଦେଖିଲେ । ସେଠାରୁ କଲିକତା
ବାହୁଡ଼ି ଜାହାଜ ଯୋଗେ ଓଡ଼ିଶା ଆସିଲେ । ଜାହାଜ-ଯାତ୍ରା ସମୟରେ
ଓଡ଼ିଶା କମିଶନରଙ୍କ ସହିତ କଳାବତୀ ପରିଚିତା ହୋଇଥିଲେ । କଟକର
ସୁଧୀମଣ୍ଡଳୀରେ ପରିଚିତ ହେବା ସଙ୍ଗେ ସଙ୍ଗେ ଘରପୋଡ଼ିରେ ସାହାଯ୍ୟ,
ରେଭେନ୍‌ସା କଲେଜ ଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ ଆଦି
ଲୋକହିତକର କାର୍ଯ୍ୟ କରିଥିଲେ । ତତ୍‌କାଳୀନ 'ଇନ୍ଦ୍ରଧନୁ-ବିଜୁଳି'
କଳିରେ କଳାବତୀ ମଧ୍ୟ ସମ୍ପୃକ୍ତ ହୋଇଥିଲେ ଏବଂ ସେହି ସମ୍ପର୍କରେ
ଅନୁଷ୍ଠିତ ଏକ ଆଲୋଚନା ସଭାରେ ଭାଷଣ ଦେଇ କବି ଉପେନ୍ଦ୍ର ଭଞ୍ଜଙ୍କ
ସପକ୍ଷରେ ଯୁକ୍ତି ବାଢ଼ିଥିଲେ । ଲେଖକଙ୍କର ବର୍ଣ୍ଣନା ଅନୁଯାୟୀ—
"କଳାବତୀଙ୍କ ବାକ୍ୟରେ ସମସ୍ତେ ପ୍ରମୋଦିତ ହେଲେ । ଦେବଧି ବିଜୁଳି
ଓ ଇନ୍ଦ୍ରଧନୁ ଉତ୍କଳ ସାହିତ୍ୟାକାଶରେ ଦେଖିବାକୁ ବିରଳ ।"

ତା'ପରେ କଟକ ପରିତ୍ୟାଗ କରି କଳାବତୀ ଭୁବନେଶ୍ୱର,
କୋଣାର୍କ ଓ ଖଣ୍ଡଗିରି ବୁଲି ଦେଖିଲେ ଏବଂ "ପୂର୍ବକାଳୀନ ଓଡ଼ିଆମାନେ
ଶିଳ୍ପ କାର୍ଯ୍ୟରେ ପାରଦର୍ଶିତା ଲାଭ କରିଥିଲେ ବୋଲି ମନେ ମନେ ସନ୍ତୁଷ୍ଟ
ହେଲେ; ମାତ୍ର ଓଡ଼ିଆଜାତିଙ୍କର ଆଜିକାଲି ଅବନତ ଅବସ୍ଥା ଦେଖି ବଡ଼

ବିଳାପ କଲେ ।" ପୁଣିରେ ସେ ଚନ୍ଦନ ଯାତ୍ରା ଦେଖି ମୁକ୍ତିମଣ୍ଡପ ସଭାରେ ପଣ୍ଡିତମାନଙ୍କ ସହିତ ଶାସ୍ତ୍ର ଚର୍ଚ୍ଚା କଲେ । ଓଡ଼ିଶାର ପୂର୍ବତନ ରାଜାମାନଙ୍କ କୀର୍ତ୍ତିକଳାପ ବିଷୟରେ ଅବହିତ ହୋଇ ପୁରୀଠାରୁ ଦକ୍ଷିଣ ଦେଶ ଯାତ୍ରା କଲେ । ଦାକ୍ଷିଣାତ୍ୟ ଭ୍ରମଣରେ ପ୍ରଥମେ ସିଂହାଚଳଠାରେ ନୃସିଂହ ଦର୍ଶନ କରି ସେ ଗଲେ ରାଜମହେନ୍ଦ୍ରୀ । ସେଠାରେ ବିଧବା-ବିବାହ ଆନ୍ଦୋଳନରେ ସେ ନିଜକୁ ସମ୍ପୃକ୍ତ କରାଇଥିଲେ । ତା'ପରେ କଳାବତୀ ମାନ୍ଦ୍ରାଜ ଯାତ୍ରା କଲେ । ସେଠି ସେତେବେଳେ ମହାଜାତୀୟ ସମିତିର ଅଧିବେଶନ ବସିଥିଲା । ତାହାର ସଂକ୍ଷିପ୍ତ ପରିଚୟ ଦେବା ସଙ୍ଗେ ସଙ୍ଗେ କଥାକାର ଶ୍ରୀ ପଣ୍ଡା ମାନ୍ଦ୍ରାଜର ସାମାଜିକ ଜୀବନ ବର୍ଣ୍ଣନା କରିଛନ୍ତି । କଂଗ୍ରେସ ଅଧିବେଶନ ଉପଲକ୍ଷେ ସେଠାରେ ଭାରତର ବିଭିନ୍ନ ଅଞ୍ଚଳରୁ ଆସି ସମବେତ ହୋଇଥିବା ପ୍ରତିନିଧିମାନଙ୍କର—ବିଶେଷତଃ ଉତ୍କଳୀୟ ରାଜାମାନଙ୍କର କଥା ଉଲ୍ଲେଖ କରିଯାଇଛନ୍ତି ।

ତତ୍ପରେ କଳାବତୀ ରାମେଶ୍ୱର ତୀର୍ଥ ଦର୍ଶନ କଲେ । ସେଠାରେ ତାଙ୍କର ପ୍ରିୟ ସଖୀ ଇନ୍ଦୁମତୀଙ୍କର ମୃତ୍ୟୁ ହୋଇଗଲା । ଏକାକିନୀ କଳାବତୀ ବମ୍ବେ ଯାଇ ସେଠାରେ ଡାକ୍ତର ବାହାଦୁରଜୀଙ୍କ ଅତିଥି ହୋଇ ରହିଲେ । ବମ୍ବେ ନଗରୀ କଳାବତୀଙ୍କ ପକ୍ଷରେ ପ୍ରୀତିପ୍ରଦ ହେଲା ଏବଂ ହାଇକୋର୍ଟର ବାରିଷ୍ଟର—ରାଜପୁତ୍ର ବଳଭଦ୍ର ସିଂହଙ୍କ ସହିତ ଏଠାରେ ତାଙ୍କର ବିବାହ ହୋଇଗଲା । ସ୍ୱାମୀଙ୍କ ସହ ସୁଖରେ ସେ ବର୍ଷେକାଳ ଦାମ୍ପତ୍ୟ ଜୀବନ କଟାଇଲା ପରେ, ପ୍ଳେଗ୍ ମହାମାରୀରେ ସ୍ୱାମୀଙ୍କୁ ହରାଇଲେ । ତହୁଁ ନିଜର ସମସ୍ତ ସମ୍ପତ୍ତି ନାରୀ-ଶିକ୍ଷା ଓ ଦୁର୍ଭିକ୍ଷପୀଡ଼ିତ ବ୍ୟକ୍ତିମାନଙ୍କର ସେବା ପାଇଁ ଦାନ କରି ସେ ହିମାଳୟକୁ ଯାଇ ଯୋଗାଭ୍ୟାସରେ କାଳାତିପାତ କଲେ । ପ୍ରସଙ୍ଗକ୍ରମେ ଲେଖକ ଏଠାରେ ବମ୍ବେର ରାଜନୈତିକ ଜୀବନ ଓ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମର କିଛିଟା ପରିଚୟ ପ୍ରଦାନ କରିଛନ୍ତି ।

ଏହି କାହାଣୀଟି ଲେଖିବା ମୂଳରେ ନିହିତ ଉଦ୍ଦେଶ୍ୟ ଶ୍ରୀ ପଣ୍ଡା ଭୂମିକାରେ ସୂଚାଇଛନ୍ତି—"ଭାରତୀୟମାନଙ୍କରେ ବିଶେଷତଃ ଓଡ଼ିଆମାନେ ଅଧୁନା ସଂସ୍କୃତ ହିନ୍ଦୁ ମତାବଲମ୍ବନପୂର୍ବକ କାଳଯାପନ କଲେ, ସଭ୍ୟ

ଜଗତରେ ଉଚ୍ଚ ସ୍ଥାନ ପ୍ରାପ୍ତ ହେବେ ।" କଳାବତୀ ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କଲବେଳେ ସବୁଠି ଏହି ସଂସ୍କୃତ ହିନ୍ଦୁ ମତର ମହତ୍ତ୍ୱ ପ୍ରତିପାଦନ କରାଯାଇଛି । ସ୍ଥାନବିଶେଷରେ ଉକ୍ତ ପ୍ରାଚୀନ ମତର ଦୋଷ ତ୍ରୁଟି ଦର୍ଶାଇବାକୁ ମଧ୍ୟ ଲେଖକ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ଧର୍ମ ଓ ରାଜନୀତି ସମ୍ପର୍କରେ ସେ ଯେ ଅତ୍ୟନ୍ତ ସଚେତନ ଥିଲେ, ତାହାର ବହୁ ପ୍ରମାଣ ପୁସ୍ତିକାଟି ମଧ୍ୟରୁ ମିଳିଥାଏ ।

କୌଣସି ରକ୍ଷକ ବା ପଥପ୍ରଦର୍ଶକ ବିନା ଜଣେ ରୂପସୀ ଯୁବତୀର ଦେଶ ପର୍ଯ୍ୟଟନର ବର୍ଣ୍ଣନା ବେଶ୍ ରୋମାଞ୍ଚକର ଏଡ୍‌ଭେଞ୍ଚର୍ ଭଳି ଲାଗୁଛି । ତେଣୁ ସ୍ଥାନେ ସ୍ଥାନେ ଆଖ୍ୟାନର ବାସ୍ତବତା କ୍ଷୁଣ୍ଣ ହୋଇଥିବାର ଦେଖାଯାଏ । ତଥାପି ଘଟଣାବିନ୍ୟାସର ଅଭିନବତ୍ୱ ଏବଂ ବର୍ଣ୍ଣନାର ଚମତ୍କାରିତା ଦୃଷ୍ଟିରୁ କାହାଣୀଟି ସୁଖପାଠ୍ୟ ହୋଇଛି । କଳାବତୀଙ୍କର ବିଭିନ୍ନ ସ୍ଥାନ ଭ୍ରମଣ ବେଳେ ଅନଙ୍ଗରଙ୍ଗିଣୀ, ଆନନ୍ଦମୋହନ ବୋଷଙ୍କ-ଠାରୁ ଶଶିକଳା, ଡାକ୍ତର ବାହାଦୁରଙ୍କ ପର୍ଯ୍ୟନ୍ତ ବହୁ ଚରିତ୍ରର ଅବତାରଣା କରାଯାଇଛି । କିନ୍ତୁ କୌଣସି ଚରିତ୍ର—ଏପରି କି କଳାବତୀ ଚରିତ୍ର ମଧ୍ୟ ସୁପରିସ୍ଫୁଟ ହୋଇପାରିନାହିଁ । ଉଦାହରଣ ସ୍ୱରୂପ—ବିବାହ ପରେ କିମ୍ବା ସ୍ୱାମୀ-ବିୟୋଗ ପରେ କଳାବତୀଙ୍କର ମାନସିକ କ୍ରିୟା ପ୍ରତିକ୍ରିୟା ଦେଖାଇବା ପାଇଁ ଯଥେଷ୍ଟ ଅବକାଶ ଥିଲେ ମଧ୍ୟ ଲେଖକ ତାହା ଦେଖାଇ ନାହାନ୍ତି । ତେଣୁ କାହାଣୀଟି ଘଟଣା-ପ୍ରଧାନ ହୋଇପଡ଼ିଛି ।

ପରମ୍ପରା ଅନୁସରଣରେ ଲେଖକ କାହାଣୀର ନାମ ନିର୍ବାଚନ କରିଛନ୍ତି । 'ବତୀ' ପ୍ରତ୍ୟୟାନ୍ତ ନାମ ଧରି ଇଚ୍ଛାବତୀ, ଲୀଳାବତୀ, ଶୋଭାବତୀ, ଲାବଣ୍ୟବତୀ ପ୍ରଭୃତି ଗୁଡ଼ିଏ କାବ୍ୟ ଆମ ପ୍ରାଚୀନ ସାହିତ୍ୟରେ ରଚିତ ହୋଇଛି । ଷୋଡ଼ଶ ଶତାବ୍ଦୀ ଶେଷଭାଗରେ କବି ବିଷ୍ଣୁ ଦାସ 'କଳାବତୀ' ନାମରେ ମଧ୍ୟ କ୍ଷୁଦ୍ର କାବ୍ୟଟିଏ ଲେଖିଛନ୍ତି । ଶ୍ରୀ ପଣ୍ଡା ଆମ ପ୍ରାଚୀନ ସାହିତ୍ୟରେ ଅବଗାହନ କରିଥିଲେ । କାହାଣୀର ନାମକରଣ ଓ କଳାବତୀଙ୍କ ରୂପ ବର୍ଣ୍ଣନାରୁ ତାହାର ପ୍ରମାଣ ମିଳେ । "କଳାବତୀ ! ତୁମ୍ଭେ କୁସୁମ କୋମଳାଙ୍ଗୀ । ଭ୍ରମରମାନେ ତୁମ୍ଭ ଚତୁର୍ଦ୍ଦିଗରେ ପରିଭ୍ରମଣ କରିବାରୁ

ଏବଂ ଦାବାଗ୍ନି ଆନନ୍ଦିତ ଥିବାରୁ ଅନୁମିତ ହୁଏ ତୁମ୍ଭ ତନୁଲତାରେ ସୁରକ୍ଷିତ ମୁଖ-ନେତ୍ର-ପାଣି-ପାଦ-କମଳମାନେ ପ୍ରସ୍ଫୁଟିତ ହୋଇଅଛନ୍ତି; ତୁମ୍ଭ ମୁଖ-ବାସନାରେ ପଦ୍ମଙ୍କୁ, ଶୀତଳ ଓ ଦୀପ୍ତିରେ ଶଶଧରଙ୍କୁ ନିନ୍ଦା କରୁଅଛି; ତୁମ୍ଭ ହାସ କୁମୁଦକୁ କିଣିଅଛି; ତୁମ୍ଭ ଅଧର-ରକ୍ତିମା ଅବଲୋକନରେ ପଲ୍ଲବ, ବନ୍ଧୁମ୍ ଓ ଜବା ଏମାନେ ଲଜ୍ଜିତ ହୋଇଅଛନ୍ତି; ତୁମ୍ଭ ନେତ୍ରର ଚଞ୍ଚଳତା ଦେଖି ମୀନଗଣ ଲଜ୍ଜିତ ହୋଇ ଜଳରେ, ମୃଗମାନେ ବନରେ, ସଦା ବାସ କରି ରହିଅଛନ୍ତି, ଭ୍ରୂଲତାର ଠାଣି ଦେଖି ରତିପତି ଆପଣାର ଧନୁ, ପରିତ୍ୟାଗପୂର୍ବକ ତୁମ୍ଭ ଆଶ୍ରୟଭାଗୀ ହୋଇଅଛନ୍ତି; ତୁମ୍ଭ ସୁକୃରୁ କୁନ୍ତଳ ଦେଖି ମେଘମାଳା ଲଜ୍ଜାଭରରେ ଆକାଶ ଓ ପର୍ବତମାନଙ୍କ ଆଶ୍ରୟ ନେଇ ଅଛନ୍ତି ।" ଇତ୍ୟାଦି

ବୃନ୍ଦାବନରେ ଭଣ୍ଡ ମଠାଧିକାରୀ ଓ ତାଙ୍କର ସେବିକା ମଞ୍ଜୁବାଣୀଙ୍କ ମଧ୍ୟରେ କଳାବତୀଙ୍କର ମନ୍ତ୍ରଦୀକ୍ଷା ଗ୍ରହଣ ସମ୍ପର୍କରେ ଯେଉଁ କଥୋପକଥନ ହୋଇଛି, ତାହା ବେଶ୍ ରସୋତ୍ତୀର୍ଣ୍ଣ ! ଉଦାହରଣ—

"ମଞ୍ଜୁ—ଆଜ୍ଞା, ସବୁ ଠିକ୍ କଲି ! ସେ ତୁମ୍ଭଠାରୁ ମନ୍ତ୍ର ଗ୍ରହଣ କରିବାକୁ ଇଚ୍ଛୁକ ହୋଇଅଛନ୍ତି । ତୁମ୍ଭ ମନ୍ତ୍ର ପ୍ରଭାବରେ ଅବଶ୍ୟ ସେ ତୁମ୍ଭ ବଶ ହେବେ । ଆମ୍ଭମାନଙ୍କୁ ଆଉ ତୁମ୍ଭେ କାହିଁକି ପଚାରିବ ?

ଅଧି—କାହିଁକି ସେପରି କହୁଅଛ, ରସବତି ? ତୁ ମୋ ଗଳାମାଳା । ଛୋଟେ ଛାଡ଼ିଲେ ବୁଡ଼ିବ ମୋ ଭେଳା । ଆଉ ଏପରି କହନା ।

ମଞ୍ଜୁ—ନା, ନା, କଥାଟି ଅଛି ଶୁଣ । ନୂଆ ନୂଆ ଆଦର । ନୂଆ ମିଳିଲେ ପୁରୁଣା ଦୂର ।

ଅଧି—କେତେ ଅକଲ ଜାଣୁ, ତୁନି ହୁଅ । ଏବେ ଥିବା ଗୃହ ଜନ ଭିତରେ କିଏ ଆଗ ଆସିଥିଲା ? କଥାଟା କିପରି ଘଟିଲା ? ସବୁ ଜାଣି ଜାଣି ଏପରି କହୁଛୁ !

ମଞ୍ଜୁ—ନାହିଁ ଆଜ୍ଞା, ସବୁବେଳେ ଏକାପରି ହେବ କି ? ମନ ତ ଚଞ୍ଚଳ । ଯା' ରସ ଅଧିକ ତା'ଠାରେ ହେଲା ।" ଇତ୍ୟାଦି

କାହାଣୀର ଭାଷାବିନ୍ୟାସରେ ଲେଖକ ଯଥେଷ୍ଟ ସତର୍କତା ଅବଲମ୍ବନ କରି ନ ଥିଲି ପରି ମନେ ହୁଏ । ଉଦାହରଣ, ଧୂମ ଶକଟ, ଦେରି କରିବା, ପର୍ଯ୍ୟନ୍ତ, ଉଦ୍‌ବାଦ, ଭାଗ୍ୟଥିଲେ ଏହି ଯୁବରାଜଙ୍କ ମୁଖରୁ ପଦେ ଅଧେ ଶୁଣି ଚରିତାର୍ଥ ହୁଅନ୍ତାଇଁ, ଆପଣ ବସାକୁ ନ ଯାଇ ଏତେ ଦେରି କହିଁ। କରି ?, ମୁଁ ଏକାକିନୀ ବନମ୍ଧ ଯିବାକୁ ହେଉଥିଲି ଇତ୍ୟାଦି ବହୁ ବିଭିନ୍ନ ପ୍ରୟୋଗ ଶ୍ରୁତିକଟୁ ହେଉଛି । ବହିର ଭୂମିକାରେ ଶ୍ରୀ ପଣ୍ଡା ଲେଖିଛନ୍ତି—"ଏହି ପୁସ୍ତକ ମୁଦ୍ରାଙ୍କନ କରିବା ପୂର୍ବେ ପୂଜ୍ୟାସ୍ପଦ ଶ୍ରୀ ମଧୁସୂଦନ ରାଓଙ୍କ ନିକଟକୁ ପ୍ରଥମେ ପ୍ରେରଣ କରିଥିଲି । ସେ ପୁସ୍ତକଟି ଅମୂଳାନ୍ତ ପାଠକରି ତହିଁରେ କେତେ କେତେ ଦୋଷ ଦେଖାଇ ଦେଇଥିଲେ; ଉକ୍ତ ଦୋଷଗୁଡ଼ିକ ସ୍ୱଦେଶବତ୍ସଳ ଶ୍ରୀ ଫକୀରମୋହନ ସେନାପତି ପରିଶ୍ରମ ସ୍ୱୀକାରପୂର୍ବକ ସଂଶୋଧନ କଲାବାଦ ଭକ୍ତିଭାଜନ ଶ୍ରୀ ଗୋବିନ୍ଦ ପଣ୍ଡା ଫେରେ ପରିମାର୍ଜନ କରି ଦେଇଅଛନ୍ତି; ଏବଂ ପରିଶେଷରେ ଯେଉଁ ଦୋଷମାନ ଥିଲି, ମୁଦ୍ରାଙ୍କନ ସମୟରେ ପ୍ରିୟ ମିତ୍ର ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ମାର୍ଜନ କରି ଦେଇଅଛନ୍ତି ।" ଏହା ସତ୍ତ୍ୱେ କାହାଣୀଟିର ଭାଷାବିନ୍ୟାସରେ ଏହି ଦୋଷତ୍ରୁଟି ମାନ କିପରି ରହିଗଲି, ବୁଝି ହେଉ ନାହିଁ ।

'କଳାବତୀ' ଆମର ଆଧୁନିକ କଥା ସାହିତ୍ୟର ଏକ ପ୍ରାଥମିକ ସୃଷ୍ଟି; ଏବଂ ଆଖ୍ୟାନ ବସ୍ତୁ, ବର୍ଣ୍ଣନା ବୈଚିତ୍ର୍ୟ, ମର୍ମବାଣୀ ଆଦି ଦୃଷ୍ଟିରୁ ଏକ ଉଚ୍ଚକୋଟିର ଉଲ୍ଲେଖଯୋଗ୍ୟ କୃତି ମଧ୍ୟ । ବର୍ତ୍ତମାନ ପାଠକସମାଜ ପାଇଁ ଏହି ପୁରୁଣା ବହିଟିର ଯଥେଷ୍ଟ ଗୁରୁତ୍ୱ ଓ ତାତ୍ପର୍ଯ୍ୟ ରହିଛି ।

'କଳାବତୀ' ପ୍ରଥମ ସଂସ୍କରଣର ଏକ ଜୀର୍ଣ୍ଣ ଶୀର୍ଣ୍ଣ କପି ମୋତେ ଯୋଗାଇ ଦେଇଥିଲେ—ମୋର ପ୍ରିୟ ବନ୍ଧୁ ଅଧ୍ୟାପକ ଶିବରାମ ପାଢ଼ି । ସେଥିପାଇଁ ତାଙ୍କ ନିକଟରେ ମୁଁ କୃତଜ୍ଞ । ବହିଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶେ ପାଣ୍ଡୁଲିପି ପ୍ରସ୍ତୁତ କରି ଦେଇଛନ୍ତି ମୋର ଶ୍ରଦ୍ଧେୟା ସ୍ତ୍ରୀ ଶ୍ରୀମତୀ ଗୀତାରାଣୀ କର, ଏମ୍. ଏ. । ତାଙ୍କ ପ୍ରତି ମୋର ଆନ୍ତରିକ ଶୁଭେଚ୍ଛା ।

—କୃଷ୍ଣଚରଣ ବେହେରା

# ଭୂମିକା

ସଙ୍ଗୀତ ଓ ପଦ୍ୟ ଲେଖିବାର ଅଭ୍ୟାସ ଅଛି, ମାତ୍ର ଗଦ୍ୟ ଲେଖିବାର ଅଭ୍ୟାସ ନଥିଲା । ଗଦ୍ୟ ଲେଖିବାର ଏହି ମୋହର ପ୍ରଥମ ଉଦ୍ୟମ । ଏଥିରେ ଭାଷାଗତ ଦୋଷ ଅନେକ ଥାଇପାରେ । ମହାଜନମାନେ ଦୟାପୂର୍ବକ ଦୋଷ ଦେଖାଇଦେଲେ, ଦ୍ୱିତୀୟ ସଂସ୍କରଣରେ ପରିମାର୍ଜନା କରିଦେବି ।

ବ୍ୟକ୍ତିଗତ ଆକ୍ରମଣ କରିବାର ଅଭିପ୍ରାୟ ମୋହର ଉଦ୍ଦେଶ୍ୟ ନାହିଁ; ମାତ୍ର ଏହି ପୁସ୍ତକ ଲେଖିବାର ଉଦ୍ଦେଶ୍ୟ ଏହି ଯେ, ଭାରତୀୟମାନଙ୍କରେ ବିଶେଷତଃ ଓଡ଼ିଆମାନେ ଅଧୁନା ସଂସ୍କୃତ ହିନ୍ଦୁମତାବଲମ୍ବନପୂର୍ବକ କାଳ ଯାପନ କଲେ ସଭ୍ୟ ଜଗତରେ ଉଚ୍ଚସ୍ଥାନ ପ୍ରାପ୍ତ ହେବେ ।

ଏହି ପୁସ୍ତକ ମୁଦ୍ରାଙ୍କନ କରିବା ପୂର୍ବେ ପୂଜ୍ୟାସ୍ପଦ ଶ୍ରୀ ମଧୁସୂଦନ ରାଓଙ୍କ ନିକଟକୁ ପ୍ରଥମେ ପ୍ରେରଣ କରିଥିଲି, ସେ ପୁସ୍ତକଟି ଆମୂଳାନ୍ତ ପାଠକରି ତହିଁରେ କେତେ କେତେ ଦୋଷ ଦେଖାଇ ଦେଇଥିଲେ; ଉକ୍ତ ଦୋଷଗୁଡ଼ିକ ସ୍ୱଦେଶବତ୍ସଳ ଶ୍ରୀ ଫକୀରମୋହନ ସେନାପତି ପରିଶ୍ରମ ସ୍ୱୀକାରପୂର୍ବକ କଲିବାଦ୍ ଭକ୍ତିଭାଜନ ଶ୍ରୀ ଗୋବିନ୍ଦ ପଣ୍ଡା ଯେପରେ ପରିମାର୍ଜନ କରି ଦେଇଅଛନ୍ତି; ଏବଂ ପରିଶେଷରେ ଯେଉଁ ଦୋଷମାନଥିଲା ମୁଦ୍ରାଙ୍କନ ସମୟରେ ପ୍ରିୟମିତ୍ର ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ମାର୍ଜନ କରି ଦେଇଅଛନ୍ତି ।

ଅତଏବ ଉକ୍ତ ମହାଜନମାନଙ୍କ ନିକଟରେ ମୁଁ ଚିରଋଣୀ ଅଟେ ।

ଅପର୍ଣ୍ଣା ପଣ୍ଡା

# ଉତ୍ସର୍ଗ ପତ୍ର

ଯେ ଉତ୍କଳ ହିତାକାଂକ୍ଷୀ ସ୍ୱଦେଶପ୍ରିୟ, ଉତ୍କଳର ମଙ୍ଗଳ ସାଧନ ନିମନ୍ତେ ପ୍ରାଣପଣରେ କାର୍ଯ୍ୟକଳାପ ସାଧନ କରିବାକୁ ସଙ୍କଳ୍ପ କରିଅଛନ୍ତି, ଯେ ଉତ୍କଳ ସାହିତ୍ୟର ଅଭାବ ମୋଚନାର୍ଥେ ସଙ୍ଗୀତ ଓ ନାଟକମାନ ରଚନା କରି କଳ୍ପନା ରାଜ୍ୟରେ ନିଜେ ଲେଖନୀ ଦଣ୍ଡ ପରିଚାଳନ କରୁଅଛନ୍ତି, ଯେ ଉତ୍କଳ ସାହିତ୍ୟ ସେବକମାନଙ୍କୁ ଉତ୍ସାହ ପ୍ରଦାନ କରିବାରେ ତ୍ରୁଟି କରନ୍ତି ନାହିଁ ଏବଂ ଯେ ନ୍ୟାୟର ପକ୍ଷପାତୀ ସେହି ଗଙ୍ଗବଂଶାବତଂସ ମହାରାଜ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ କରକମଳରେ ଏହି ପୁସ୍ତକଟି ବିନୀତ ଭାବରେ ଅର୍ପଣ କଲି ।

**ଅପର୍ଣ୍ଣା ପଣ୍ଡା**

# ପ୍ରଥମ ପରିଚ୍ଛେଦ

## ସଖିମାନଙ୍କ ପରସ୍ପର କଥୋପକଥନ

ଇନ୍ଦୁମତୀ—କଳାବତି ! ତୁମ୍ଭେ ସକଳ କଳାରେ ପରିପୂର୍ଣ୍ଣ ହୋଇ ଭାରତର ମଧ୍ୟପ୍ରଦେଶ ବସ୍ତ୍ରପୁର ନଗରରେ ରାମସିଂହଙ୍କ ଗୃହରେ ଜନ୍ମଗ୍ରହଣ କରିଅଛ । ଜନ୍ମଦିନଠାରୁ ତୁମ୍ଭ ମାତା ପିତା ଅତୁଳ ଐଶ୍ୱର୍ଯ୍ୟ ଭୋଗକରି ଆସୁଅଛନ୍ତି; ମାତ୍ର ତୁମ୍ଭ ସୁଖସାଧନ ନିମନ୍ତେ ସେମାନେ କିଛି ଉପାୟ କଲପରି ବୋଧ ହେଉନାହିଁ । କଲେ ମଧ୍ୟ ଅନ୍ଧ ମାଣିକ୍ୟ ଚହ୍ନିଲ ନ୍ୟାୟ ହେବ । ଏହା ଶୁଣି କଳାବତୀଙ୍କ ଶ୍ରୀମୁଖ ମ୍ଳାନ ଭଜିଲା; ପୁଣି ଦୁଃଖିତମନା ହୋଇ କିଛି ପ୍ରଶ୍ନ କରିବାକୁ ଲାଗିଲେ ।

କଳାବତୀ—କେଉଁ କାରଣରୁ ଆପଣ ଏପରି କହିବା ହେଉ ଅଛନ୍ତି ?

ଇନ୍ଦୁମତୀ—କଳାବତି ! ତୁମ୍ଭେ କୁସୁମ କୋମଳାଙ୍ଗୀ ଭ୍ରମରମାନେ ତୁମ୍ଭ ଚତୁର୍ଦ୍ଦିଗରେ ପରିଭ୍ରମଣ କରିବାରୁ ଏବଂ ଦବାଗ୍ନି ଆନନ୍ଦିତ ଥିବାରୁ ଅନୁମିତ ହୁଏ ତୁମ୍ଭ ତନୁ ଲତାରେ ସୁରଞ୍ଜିତ ମୁଖ-ନୟନ-ପାଣି-ପାଦ-କମଳମାନେ ପ୍ରସ୍ଫୁଟିତ ହୋଇଅଛନ୍ତି; ତୁମ୍ଭ ମୁଖ ବାସନାରେ ଚନ୍ଦ୍ରକୁ, ଶୀତଳ ଓ ଦୀପ୍ତିରେ ଶଶଧରଙ୍କୁ ନିନ୍ଦା କରୁଅଛି; ତୁମ୍ଭ ହାସ କୁମୁଦକୁ ଜିଣିଅଛି; ତୁମ୍ଭ ଅଧର-ରକ୍ତିମା ଅବଲୋକନରେ ପଲ୍ଲବ, ବନ୍ଧୁଜ ଓ ଜବା ଏମାନେ ଲଜ୍ଜିତ ହୋଇଅଛନ୍ତି; ତୁମ୍ଭ ନୟନର ଚଞ୍ଚଳତା ଦେଖି ମୀନଗଣ ଲଜ୍ଜିତ ହୋଇ ଜଳରେ, ମୃଗମାନେ ବନରେ ସଦା ବାସ କରି ରହିଅଛନ୍ତି; ଭ୍ରୂଲତାର ଠାଣି ଦେଖି ରତିପତି ଆପଣାର ଧନୁ

ପରିତ୍ୟାଗପୂର୍ବକ ତୁମ୍ଭ ଆଶ୍ରୟ ଭାଗୀ ହୋଇଅଛନ୍ତି, ତୁମ୍ଭ ସୁନ୍ଦର କୁନ୍ତଳ ଦେଖି ମେଘମାଳା ଲଜ୍ଜାଭରରେ ଆକାଶ ଓ ପର୍ବତମାନଙ୍କ ଆଶ୍ରୟ ନେଇଅଛନ୍ତି । ରୂପବନ୍ତ ! ତୁମ୍ଭ ଆଭରଣମାନଙ୍କ ସମ୍ପତ୍ତି କି କହିବ ? ଦେଖ, ତାରକାମାନେ ଆକାଶରେ ରହି ଭୂତଳକୁ ଆମ୍ଭମାନଙ୍କ ସମ୍ପତ୍ତି କିଏ ଚୋରି କରି ନେଇଅଛନ୍ତି ବୋଲି ଅଧୋବଦନରେ ଚାହିଁ ରହିଅଛନ୍ତି । ସୁନ୍ଦର ! ତୁମ୍ଭ ବିଷୟରେ ଆଉ କିଛି କହିବାକୁ ମୋ ମନ ବଳୁଅଛି ନ କହି ରହିପାରିବି ନାହିଁ । ଯଥାର୍ଥ କଥାଟା କହିଲେ କାହିଁକି ମନ ବ୍ୟଥା ହେବ ? ତୁମ୍ଭେ ଗଣ୍ଡରେ ହସ୍ତିର ଗଣ୍ଡକୁ ଖର୍ବ କରିଅଛ; ଏବଂ ତୁମ୍ଭ କଟୀର ଶୋଭା ଦେଖି ଲଜ୍ଜାଭରେ ସିଂହ ବନରେ ବାସକରି ଅଛି ଓ ଡମରୁ ଜଡ଼ପ୍ରାୟ ହୋଇ ଜନ ସମାଜରେ କ୍ରନ୍ଦନ କରୁଅଛି । ସୁନ୍ଦର ! ତୁମ୍ଭର କର-ପଲ୍ଲବ, ଯଦି କମଳ ହୋଇଅଛି, ତେବେ ତୁମ୍ଭ ବାହୁଯୁଗଳ ପଦ୍ମନାଳ ହେବାର ସନ୍ଦେହ କି ? ଦେଖ ସୁନ୍ଦର ! ତୁମ୍ଭ ବାହୁଯୁଗଳର ଶୋଭାଦେଖି ପଦ୍ମନାଳ କିପରି ଜଳରେ ଲୁଚି ରହିଅଛି । କଳାବନ୍ତ ! ତୁମ୍ଭ ଅଙ୍ଗ-ପ୍ରତ୍ୟଙ୍ଗମାନେ ଯଥାଗୁଣରେ ବର୍ଣ୍ଣିତ ହେବାରେ ସନ୍ଦେହ ନାହିଁ । ଅଧୁନା ତୁମ୍ଭେ ପଞ୍ଚଦଶବର୍ଷରେ ପଦାର୍ପଣ କରିଅଛ । ତୁମ୍ଭ ଆନ୍ତରିକ ଗୁଣ ଅମ୍ଭେ ଯେତେ ପର୍ଯ୍ୟନ୍ତ ଜାଣିଅଛୁଁ ତାହା କିଛି କହିବୁ । କଳାବନ୍ତ ! ତବ ସଦୃଶ ବାଳାମଣି ଭୂତଳରେ ଅବତୀର୍ଣ୍ଣ ହେବାର ଅସମ୍ଭବ । ତୁମ୍ଭ ଶରୀର ଶୋଭା ଯେପରି ମନୋମୁଗ୍ଧକର ଆନ୍ତରିକ ଗୁଣ ମଧ୍ୟ ତାଦୃଶ ପ୍ରୀତିକର ଅଟେ । ଦେଖ ତୁମ୍ଭେ ସପ୍ତମ ବର୍ଷରେ ପଦାର୍ପଣ କରିବାବେଳେ ବିଦ୍ୟାରମ୍ଭ କଲ । ମାତ୍ର ଏହି ଆଠବର୍ଷରେ ତୁମ୍ଭେ ଯେଉଁ ଯେଉଁ ବିଦ୍ୟାରେ ପାରଗ ହୋଇଅଛ ତାହା ଜାଣିବା ମାତ୍ରକେ ସମସ୍ତେ ଆଶ୍ଚର୍ଯ୍ୟ ମଣିବେ । କଳାବନ୍ତ ! ସ୍ତ୍ରୀମାନଙ୍କ କଥା କେତିକି ଆଉ ପୁରୁଷମାନେ ତୁମ୍ଭ ଗୁଣ ପ୍ରଶଂସା କରି ତୁମ୍ଭଠାରେ ନତମସ୍ତକ ହେବେ । ତୁମ୍ଭେ ବିଦ୍ୟାରମ୍ଭ କରିବାଠାରୁ ପ୍ରାୟ ତିନି ବର୍ଷରେ କାବ୍ୟ ବିଶାରଦା ବୋଲି ଜଗତରେ ନାମ ବହିଲ ଏବଂ କାବ୍ୟଶାସ୍ତ୍ର ଚର୍ଚ୍ଚାକରି ପଣ୍ଡିତ-ମଣ୍ଡଳୀରେ ପ୍ରଶଂସିତ ହେଲ । ଏହି ଗୁଣଗଣରେ ପରିତୃପ୍ତ ନହୋଇ ଯେତେବେଳେ ତୁମ୍ଭର ପଞ୍ଚଦଶ ବର୍ଷ ବୟଃକ୍ରମ ହେଲା, ସେହି ସମୟରେ ନାଟକ, ଚମ୍ପୂ ଓ ଭାଣ ପ୍ରଭୃତି ପାଠ କରି କଳାଶାସ୍ତ୍ରରେ ମନ ବଳାଇଅଛ ।

ମୃଗନୟନେ ! କଳାଶାସ୍ତ୍ର ପାଠ କଲେ କି ହେବ ? ତୁମ୍ଭେ ଅଦ୍ୟ ସେତେ କଳାରେ ପରିପୂର୍ଣ୍ଣା ହୋଇଅଛ, ତଦୁପଯୁକ୍ତ ପାତ୍ରରେ ତୁମ୍ଭଙ୍କୁ ଅର୍ପଣ କରିବାକୁ ଆମ୍ଭପକ୍ଷେ ଦୁର୍ଘଟ । ଗୁଣାଳୟେ ! ତୁମ୍ଭେ ଯାହା କହିବାକୁ ହେବ ପାଶ୍ଚାତ୍ କହିବ ଆଉ ଗୋଟିଏ ତୁମ୍ଭର ଅଦ୍ଭୁତ ଗୁଣଅଛି ତାହା ଆଜି ଜଗତରେ ପ୍ରକାଶ ନ କରି ଆମ୍ଭେ ରହିପାରିବୁ ନାହିଁ । ଦେଖ କଳାବତି ! ଅଧିକନ୍ତର ତୁମ୍ଭ ବାହ୍ୟ ସୌନ୍ଦର୍ଯ୍ୟ କାବ୍ୟମାନଙ୍କୁ ହଟାଇଦେଇ ଅଳଙ୍କାର ଶାସ୍ତ୍ରକୁ କୁତ୍ସା କରୁଅଛି । ଦୟା, ପ୍ରେମ ଓ ଭକ୍ତି ରସରେ ଜର୍ଜ୍ଜରିତା ହୋଇ କାବ୍ୟର ଅନ୍ତରିକ୍ତାଂଶକୁ ତୁମେ ନିନ୍ଦା କରୁଅଛ । ତୁମ୍ଭସ୍ୱ ନୀତି-ସମୂହକୁ ଚାହିଁ ନୀତି-ଶାସ୍ତ୍ରମାନେ ତ୍ରସ୍ତ ପାଉଅଛନ୍ତି । ତୁମ୍ଭ ସୁଲଳିତ ଗାନ ଶ୍ରବଣକରି ସପ୍ତସ୍ୱର ତୁମ୍ଭ ଆଶ୍ରୟଭାଗୀ ହୋଇ ଅଛନ୍ତି । ତୁମ୍ଭ ନେତ୍ର-ଭଙ୍ଗି କାକୁ-ବଚନ ସୁମଧୁର ହାସ ଅଧର-ରକ୍ତିମା ଓ ଯୌବନଶ୍ରୀ ସନ୍ଦର୍ଶନରେ ଲକ୍ଷଣଶାସ୍ତ୍ର ଉଦ୍ଭ୍ରାନ୍ତ ହୋଇ ସର୍ବଦା ତୁମ୍ଭ ଗୁଣଗାନ କରିବାକୁ ବସିଅଛି । ଅତଏବ କବିମାନେ ଯାହା ବର୍ଣ୍ଣନା କରିଅଛନ୍ତି ଓ କରୁଅଛନ୍ତି ଏବଂ କରିବେ ସେମାନଙ୍କର ତୁମ୍ଭେ ଆଦର୍ଶସ୍ଥାନୀୟା ହେବ । କଳାବତୀ ସମସ୍ତ କଳାରେ ପରିପୂର୍ଣ୍ଣା ହୋଇ ଷୋଡ଼ଶ ବର୍ଷ ଲଙ୍ଘନ ପୂର୍ବକ ସପ୍ତଦଶ ବର୍ଷରେ ଉପନୀତା ହୋଇଅଛନ୍ତି । ଏହି ସମୟରେ ଏହି ବଗିଚ ଲତାଙ୍ଗୀ ଅରବିନ୍ଦ କୈରବ ଜବା କୁନ୍ଦ କେତକୀ ଚମ୍ପକ ଅଶୋକ ଓ ବନମାଳିକା କୁସୁମ ବୃନ୍ଦରେ ସୁଶୋଭିତା । କୁସୁମ କୋମଳାଙ୍ଗୀ ତରୁଣୀ ହେବା ଯୋଗୁଁ ଯୁବକମାନଙ୍କ ପଦବୀ ବୁଡ଼ାଇବା ନିମନ୍ତେ ବସିଅଛନ୍ତି ।



# ଦ୍ୱିତୀୟ ପରିଚ୍ଛେଦ

## କଳାବତୀଙ୍କ ଦେଶପର୍ଯ୍ୟଟନ

ଇନ୍ଦୁମତୀ—ରମଣି ଶିରୋମଣ୍ଡନେ, ମନୁଷ୍ୟମାନେ ବୁଦ୍ଧି ବଳରେ ଯେତେ ଯେତେ ବିଚିତ୍ର ପଦାର୍ଥ ଉଦ୍ଭାବନ କରିଅଛନ୍ତି, ତନ୍ମଧ୍ୟରେ ଧୂମ, ଶକଟ ବିଶେଷତଃ ଉପକାରୀ ଅଟେ । ଏହା ଯୋଗୁଁ ଆମ୍ଭେମାନେ ଅନତି ବିଳମ୍ବରେ ନିଜ ଅଞ୍ଚଳ ପରିତ୍ୟାଗ କରି ବିଶେଷଦୂର ଆସିଅଛୁଁ; ବର୍ତ୍ତମାନ ରବି ପ୍ରକାଶ ହେଲେଣି । ଦେଖ ଦେଖ, ତୁମ୍ଭ ଦୃଷ୍ଟି ପଥରେ ଯାହା ଦିଶୁଅଛି ତାହାର ନାମ ନଦିଆ । ଏହିଠାରେ କେତେଦିନ ଅବସ୍ଥାନ କରନ୍ତୁ । ଏହା ଗୋଟିଏ ପୁଣ୍ୟ କ୍ଷେତ୍ର । ଏହିଠାରେ ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟ ଅବତୀର୍ଣ୍ଣ ହୋଇଥିଲେ । ଏହି ମହାତ୍ମାଙ୍କ ଜନ୍ମ ପୂର୍ବେ ସମସ୍ତ ବଙ୍ଗପ୍ରଦେଶ ମ୍ଲେଚ୍ଛ ଭାବାପନ୍ନ ଥିଲା । ଏହି ମହାତ୍ମା ଜନ୍ମଗ୍ରହଣ କରି ବଙ୍ଗବାସିମାନଙ୍କର କଳୁଷିତ ଆତ୍ମାକୁ ମାର୍ଜିତ କରି ବୈଷ୍ଣବ ଧର୍ମ ପ୍ରଚାର କରିଅଛନ୍ତି । ଏହି ଧର୍ମ କ୍ରମଶଃ ଭାରତର ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ପ୍ରଚଳିତ ହୋଇଅଛି । କଳାବତୀ ସେଠାରେ ପ୍ରବେଶ କରି କେତେଦିନ ଅବସ୍ଥାନ କଲେ । ଦିନେ ପ୍ରାତଃ କାଳରେ କଳାବତୀ ସଖୀ ସହିତ ଗଙ୍ଗାରେ ସ୍ନାନ କରିବାକୁ ଯିବା ସମୟରେ ବାଟରେ ଅନଙ୍ଗରଙ୍ଗିଣୀ ତାହାଙ୍କୁ ଲକ୍ଷ୍ୟକରି ପଚାରିଲେ ।

ଅନଙ୍ଗ—ଦେବି ! ଆପଣ କେଉଁଠାରୁ ଆସିଅଛନ୍ତି ?

କଳାବତୀ—ଆମ୍ଭେ ନାଗପୁର ପ୍ରଦେଶରୁ ଆସିଅଛୁଁ ।

ଅନଙ୍ଗ—(ଅଙ୍ଗୁଳି ଦେଖାଇ) ଏ କିଏ ?

କଳାବତୀ—ଆମ୍ଭ ସଖୀ ।

ଅନଙ୍ଗ—ଆପଣଙ୍କ ନାମ ମୁଁ ଶୁଣିବାକୁ ପାଇବି କି ?

କଳାବତୀ—ଆମ୍ଭ ନାମ କଳାବତୀ ଏବଂ ଆମ୍ଭ ସଖୀଙ୍କ ନାମ ଇନ୍ଦୁମତୀ । ଆପଣଙ୍କ ନାମ କଣ ?

ଅନଙ୍ଗ—ମୋ ନାମ ଅନଙ୍ଗ-ରଙ୍ଗିଣୀ । ଆପଣମାନେ ଏଠାରେ କେତେଦିନ ଅବସ୍ଥାନ କରିବେ ?

କଳାବତୀ – କିଛିଦିନ ରହିବାକୁ ଇଚ୍ଛାକରୁଁ ।

ଏହାପରେ କୁତୂହଳୀ ହୋଇ ତିନିହେଁ ପତିତପାବନୀ ଗଙ୍ଗାରେ ସ୍ନାନ କରିବାକୁ ଗଲେ । ସ୍ନାନ ସମୟରେ କଳାବତୀ ଦେଖିଲେ ଯେ ଗୌରାଙ୍ଗ ନାମକୀର୍ତ୍ତନରେ ଗଙ୍ଗା ପ୍ରତିଧ୍ୱନିତ ହେଉଅଛି । କଳାବତୀ ନଦିଆବାସିଙ୍କର ଭକ୍ତି ଅବଲୋକନ କରି ସେଠାରେ କେତେଦିନ ରହିବାକୁ ସଂକଳ୍ପ କଲେ ଏବଂ ସ୍ନାନାନନ୍ତର ନିଜ ଆବାସକୁ ପ୍ରସ୍ଥାନ କଲେ ।

କଳାବତୀ—ସଖି ଇନ୍ଦୁମତି ! ଏହି ନଦିଆବାସିଙ୍କର ଜନ୍ମ ଧନ୍ୟ । ଦେଖ, ଆବାଳ-ବୃଦ୍ଧ-ବନିତା ସମସ୍ତେ ଗୌରାଙ୍ଗ ନାମକୀର୍ତ୍ତନରେ କିପରି ମଗ୍ନ ରହିଅଛନ୍ତି !

ଇନ୍ଦୁମତୀ – ସଖି କଳାବତି ! ଆପଣ ଏଠାରେ କେତେଦିନ ରହନ୍ତୁ । କଳାବତୀ ଆଉ ଦିନେ ସଖି ସହିତ ନଦିଆରେ ଭ୍ରମଣ କରୁଥିବା ସମୟରେ ଦେଖିଲେ ଯେ ବାଳକମାନେ ମନୋଯୋଗପୂର୍ବକ ବିଦ୍ୟାଭ୍ୟାସ କରୁଅଛନ୍ତି, ଯୁବକମାନେ ନିଜ ନିଜ ବୃତ୍ତି ଅବଲମ୍ବନପୂର୍ବକ ଧନୋପାର୍ଜ୍ଜନରେ ସର୍ବଦା ରତ ଏବଂ ବୃଦ୍ଧମାନେ ଭକ୍ତିସହକାରେ ହରିନାମ କୀର୍ତ୍ତନ କରୁଅଛନ୍ତି । ସେହି ସମୟରେ ଅନଙ୍ଗ-ରଙ୍ଗିଣୀ କଳାବତୀଙ୍କୁ ଡାକି ପଚାରିଲେ ।

ଅନଙ୍ଗ—ସଖି କଳାବତି ! କଣ ଦେଖୁଅଛ ?

କଳାବତୀ—ଏହି ନଦିଆବାସିଙ୍କୁ ଦେଖୁଅଛି ।

ଅନଙ୍ଗ—ଦିନକରେ ଆପଣ ଏମାନଙ୍କୁ ଜାଣିପାରିବ ନାହିଁ । ଏମାନଙ୍କୁ ମୁଁ ଭଲରୂପେ ଜାଣିଅଛି ।

କଳାବତୀ—ସଖି ତେବେ କହନ୍ତୁ ।

ଅନଙ୍ଗ—ସଖି କଳାବତି ! ଏହି ଜଙ୍ଗଲବାସିମାନଙ୍କ ଆଧୁନିକ ପ୍ରଥା ଏହି ଯେ, ସାଧାରଣତଃ ସମସ୍ତେ ବିଦ୍ୟାଭ୍ୟାସ କରି ଧନ ଲୋଲୁପ

ହୋଇ ସର୍ବଦା ଧନାର୍ଜ୍ଜନରେ ରତ ହୋଇଅଛନ୍ତି । ଏମାନେ କେବଳ ସ୍ୱାର୍ଥପର ଅଟନ୍ତି । ଏହି ନବଅାବାସିମାନଙ୍କରୁ କେତେକ ନାମକୁ ମାତ୍ର ହରି-ଭକ୍ତି-ଚିହ୍ନ-ଧାରଣ କରିଅଛନ୍ତି । ଏଠା ଅଧିକାଂଶ ଲୋକେ ବଙ୍ଗହତାର ବଙ୍ଗାଳିମାନଙ୍କ ସହିତ ପ୍ରାୟ ସମସ୍ତ ଗୁଣରେ ସମାନ ହୋଇ ପାରିବେ । ଏମାନେ ଆମ୍ଭର ପୂର୍ବପ୍ରଥା ହରାଇ ପାଶ୍ଚାତ୍ୟ ବିଦ୍ୟାରେ ପାରଗ ହୋଇ ସର୍ବପ୍ରଥମତଃ ଭାରତରେ ପାଶ୍ଚାତ୍ୟ ରୀତ୍ୟନୁସାରେ ସଭ୍ୟ ବୋଲି ପରିଚୟ ଦେଇଅଛନ୍ତି । ଆଜକାଲି ଏମାନେ ଜଗତରେ ସଭ୍ୟତାର ପ୍ରଥମ ସୋପାନରେ ଅଧିରୋହଣ କରିଥିବା ଇଂଲଣ୍ଡ ଓ ଆମେରିକା ଦେଶମାନ ପରିଭ୍ରମଣ କରି ଭାରତରେ ଚିର ପ୍ରତିଷ୍ଠିତ ଥିବା ଜାତି ପ୍ରଭେଦ ପ୍ରଥାକୁ ହେୟଜ୍ଞାନ କରି ଏଥି ବିପ୍ୟତରେ ପାଶ୍ଚାତ୍ୟ ଧର୍ମ୍ମ ପାଳନ କରିବାକୁ ବସିଅଛନ୍ତି । କଳାବତି ! କଲିକତାକୁ ଥରେ ଚାଲ ସେଠାକୁ ଗଲେ ବାବୁମାନଙ୍କ ସମସ୍ତ ଧର୍ମ୍ମ ଜଣାପଡ଼ିବ ।

କଳାବତୀ—ସଖି ଇନ୍ଦୁମତି ! ଅାପଣ ଏବେ ସବୁ ବୁଝିଲ ତ, ଆଉ କାହିଁକି ଡେରି କରୁଅଛନ୍ତି ।

ଇନ୍ଦୁମତୀ—ସଖି କଳାବତି ! କଲିକତା ଯିବା ଚାଲ । ଯଦି ସେହି ଗୁଣୀମାନଙ୍କଠାରେ ତୁମ୍ଭ ମନ ମାନେ ତେବେ ଆମ୍ଭ କାର୍ଯ୍ୟ ସଫଳ ହେବ । ଅାଉ ତୁମ୍ଭଙ୍କୁ ଧରି ଅନ୍ୟ ଦେଶ ଭ୍ରମଣ କରିବାର ଆବଶ୍ୟକ ନାହିଁ ।

କଳାବତୀ କଲିକତାରେ ପ୍ରବିଷ୍ଟ ହୋଇ ଦିନେ ପ୍ରାତଃକାଳରେ ଭ୍ରମଣ କରୁଅଛନ୍ତି । ଇତ୍ୟବସରରେ କଲିକତା ସହରରେ ବାବୁମାନଙ୍କ ଗହଳ ଲାଗିଅଛି । ଭୂପତି ଚନ୍ଦ୍ରସେନ ନାମକ ଜଣେ ବାବୁ, ସାହେବ ପୋଷାକ ଧାରଣପୂର୍ବକ ଗାଡ଼ିରେ ଉପବିଷ୍ଟ ହୋଇ, ନାନା ପ୍ରକାର ଖାଦ୍ୟସାମଗ୍ରୀ ଧରି ହାଇକୋର୍ଟ ପ୍ରତି ପ୍ରଧାବିତ ହେଉଅଛନ୍ତି । ଏହି ସମୟରେ ପଦ୍ମଚରଣ ଚୌଧୁରୀ, ନରେନ୍ଦ୍ରନାଥ ବସୁଙ୍କୁ ପ୍ରସ୍ତାବକ୍ରମେ ଏହି ଗାଡ଼ିରେ ଯିବା ମହାତ୍ମା କି କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ବୋଲି ପଚାରିଲେ । ବୋଷ କହିଲେ—"ଏହି ମହାତ୍ମା ବିଲାତ ଯାଇ ବାରିଷ୍ଟର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଠା ହାଇକୋର୍ଟରେ କାର୍ଯ୍ୟ କରୁଅଛନ୍ତି । ଏ ଜଣେ

କୁଳୀନ ବ୍ରାହ୍ମଣ । ଏବେ ପ୍ରାଚୀନ ବ୍ରାହ୍ମଣ ଧର୍ମ ପରିତ୍ୟାଗ କରି ଆଧୁନିକ ବ୍ରାହ୍ମଣ ଧର୍ମରେ ଦୀକ୍ଷିତ ହୋଇଅଛନ୍ତି; ଅର୍ଥାତ ଏହାଙ୍କ ପକ୍ଷେ ଜାତି ପ୍ରଭେଦ ନାହିଁ । ଏଣେ କେତେ ବାବୁ ପାଜାମା, କମିଜ, ଚର୍ମପାଦୁକା, ଉଷ୍ଣୀଷ ପ୍ରଭୃତି ଧାରଣପୂର୍ବକ ବଜାରରେ ଭ୍ରମଣ କରୁଅଛନ୍ତି ଏବଂ ସ୍ଥାନେ ସ୍ଥାନେ କାଫି, ଚା, ମଦ୍ୟ, ତରକାରୀ ପ୍ରଭୃତି ବିକ୍ରୀତ ହେଉଅଛି । ସାୟଂକାଳ ସମୟରେ ପୁଣି କଳାବତୀ ସାୟଂସମୀରଣ ସେବନାର୍ଥ ଭ୍ରମଣ କରିବାକୁ ଯାଇ ଦେଖିଲେ ଯେ, ସେହି ସମୟରେ କେତେକ ବାବୁ ଗଳିମାନଙ୍କରେ ଜ୍ଞାନ ହରାଇ ପଡିଅଛନ୍ତି । କୌଣସି କୌଣସି ନାଟ୍ୟଶାଳାମାନଙ୍କରେ ନାନାବିଧ ଅଭିନୟ ଲାଗିଅଛି । କେଉଁଠାରେ ବଙ୍ଗଭାଷାରେ ବଙ୍ଗନିବାସୀମାନେ ହରିଶ୍ଚନ୍ଦ୍ର ପ୍ରଭୃତି ଭାରତୀୟ ନାଟକମାନ ଅଭିନୟ କରୁଅଛନ୍ତି । ଆଉ କେଉଁଠାରେ ଇଂରାଜ ବ୍ୟକ୍ତିମାନେ ସେକ୍ସପିଅର ନାଟକ ଅଭିନୟ କରୁଅଛନ୍ତି । ଇଂରାଜ ନାଟ୍ୟଶାଳାରେ ଜଣେ ବାବୁ ଜଣେ ଇଉରୋପୀୟନ୍ ମହିଳାକୁ ଆପଣା ବାମପାର୍ଶ୍ୱରେ ରଖି କଥୋପକଥନ କରୁଅଛନ୍ତି । ଇତ୍ୟବସରରେ ହଠାତ୍ କଳାବତୀ ସେହି ନାଟକଶାଳାରେ ପ୍ରବିଷ୍ଟ ହୋଇ ବୁଝିଲେ ଯେ ସେହି ଶ୍ୱେତାଙ୍ଗୀ ମହିଳା ବାବୁଙ୍କର ବିବାହିତା ଭାର୍ଯ୍ୟା ଅଟନ୍ତି । ହାୟ ! ଯେଉଁ ବଙ୍ଗ ପ୍ରଦେଶରେ ଶ୍ରୀକୃଷ୍ଣଚୈତନ୍ୟ ବୈଷ୍ଣବଧର୍ମ ପ୍ରଚାର କରିଥିଲେ, ପୂର୍ବକାଳରୁ ଭାରତରେ ଯେଉଁ ଜାତିଭେଦ ପ୍ରଥା ଥିଲା ଏହି ସମସ୍ତ ବିଷୟ ଆଜିକାଲି ବାବୁମାନେ ହରାଇ ବସା-ଉଠା, ଖିଆ-ପିଆ, ପୋଷାକ, ଜାତି ମତ ଓ ଧର୍ମରେ ଇଂରାଜଙ୍କ ପ୍ରଥା ଅବଲମ୍ବନ କରିବାକୁ ବସିଅଛନ୍ତି । କି ପରିତାପର ବିଷୟ ! ଏପରି ଭାବ ଭାବି ରମଣୀମଣି ହାରିସନ୍ ରାଜପଥ ଦେଇ ଆସୁ ଆସୁ ଦେଖିଲେ ଯେ ଅନେକ ଦୀପ ଏକତ୍ର ଉଦୟ ହେଲାପରି ସେହି ପଥ ଆଲୋକିତ ହୋଇଅଛି ଏବଂ ତତ୍ପାର୍ଶ୍ୱବର୍ତ୍ତୀ ସୌଧାବଳୀ ପରିଚ୍ଛନ୍ନଭାବରେ ଦୃଷ୍ଟିପଥରେ ପତିତ ହେବାରୁ ଧୀରେ ଅବଲୋକନ କରନ୍ତେ ସେ ଅଟ୍ଟାଳିକାମାନ ଅନିର୍ବଚନୀୟ ଶୋଭା ଧାରଣ କରିଅଛନ୍ତି । ଏହାର ମର୍ମ ବୁଝିବା ନିମନ୍ତେ ସେହି ରାଜମାର୍ଗରେ ଯାଉଥିବା ରାମପ୍ରସାଦ ସେନଙ୍କୁ ପଚାରିବାକୁ ସେ କହିଲେ ।

ରାମପ୍ରସାଦ—ସୁନ୍ଦର ! ଏହି ଆଲୁଅ ଚନ୍ଦ୍ର-ଶକ୍ତିର ପ୍ରଭା । ଦ୍ୱିତୀୟଦିନ ପ୍ରାତଃକାଳରେ କାର୍ଣ୍ଣଓଆଲିସ୍ ରାଜପଥଦେଇ ଅଶ୍ୱଯାନରେ କଳାବନ୍ତୀ ପୂର୍ବଦିଗକୁ ଗମନ କରିବାକୁ ବାହାରିଲେ । ଯାଉଁ ଯାଉଁ ଦୃଷ୍ଟିପଥରେ ନବବଜାର ପଡ଼ିବାରୁ କୌତୁକାର୍ଥେ ସେ ବଜାର ବୁଲିବାକୁ ଗଲେ । ସେଠାରେ ନାନାପ୍ରକାର ଉଦ୍ଭିଦ, ମାଂସ, ପକ୍ଷୀଶାବକ ଓ ନାନାଜାତୀୟ ପକ୍ଷଣ୍ଡ ଏହି ସମସ୍ତ ପ୍ରକାର ପଦାର୍ଥମାନ ବସିଅଛି । ଉଦ୍ଭିଦମାନଙ୍କରେ କୋବି, ବିଲାତିଆଳୁ, ନୋଲ୍‌କୋଲ ପ୍ରଭୃତି ଇଂରାଜ ଶାକସବଜ, କଦଳୀ, ଶିମ୍ବ, ବାଇଗଣ, ଆଳୁ ପ୍ରଭୃତି ଦେଶୀୟ ଶାକସବଜ; ମାଂସମାନଙ୍କରେ ମେଷ, ଛାଗ, ହରିଣ, ବରାହ, ଠେକୁଆ, ଜାଆଦ ପ୍ରଭୃତି ମାଂସ; ଡିମ୍ବମାନଙ୍କରେ କୁକ୍କୁଟ, ହଂସ, ପ୍ରଭୃତି ଡିମ୍ବ; ଶାବକ-ମାନଙ୍କରେ ମୟୂର, କୁକ୍କୁଟ, ହଂସ, କାମଞ୍ଚ, ପାରା ନାନା ଜାତୀୟ ଶୁକ, ସାରି, ଗୋବରା ପ୍ରଭୃତି ପକ୍ଷୀଶାବକ ବିକ୍ରୀତ ହେଉଅଛି । ଏହି ପଦାର୍ଥମାନ କ୍ରୟ କରିବା ନିମନ୍ତେ କି ଶ୍ୱେତକାୟ, କି କୃଷ୍ଣକାୟ, କି ହାବ୍‌ସିକାୟ, କି ବଙ୍ଗବାସୀ ସମସ୍ତେ ସମବେତ ହୁଅନ୍ତି । କେତେଜଣ ବଙ୍ଗାଳି ସସ୍ତ୍ରୀକ ହୋଇ କଥୋପକଥନ ପୂର୍ବକ ବଜାରରେ ଚତୁର୍ଦ୍ଦିଗ ଭ୍ରମଣ କରି ନିଜ ନିଜ ଦାସମାନଙ୍କ ହାତରେ ଲୁଚକରି କ୍ରୀତ ପଦାର୍ଥ ଧରାଇ ଗୃହକୁ ଯାନ୍ତି । ଏହି ସମସ୍ତ ବିଷୟ କଳାବନ୍ତୀ ଅବଲୋକନ କରି ଚମତ୍କୃତ ହେଲେ । ପରେ ଗଙ୍ଗାତୀର ଦେଇ ଯାଉଁ ଯାଉଁ ଦେଖିଲେ ଯେ, ଅନେକ ଲୋକ ଗଙ୍ଗାରେ ସ୍ନାନ କରି ଫଳ-ପୁଷ୍ପ ହସ୍ତ ହୋଇ ତତ୍‌ପାର୍ଶ୍ୱବର୍ତ୍ତୀ ମନ୍ଦିରକୁ ଗମନ କରୁଅଛନ୍ତି । ସେ ମନ୍ଦିରର ନାମ କାଳୀମନ୍ଦିର । ଏହି ସମୟରେ ଜାନକୀନାଥ ସେନ ସସ୍ତ୍ରୀକ ହୋଇ ପୁତ୍ର କାମନାର୍ଥେ ଗୁଟିଏ ମେଷ ଶାବକ ଏ ଦେବୀଙ୍କଠାରେ ବଳିଦେବାକୁ ଆଣିଅଛନ୍ତି । ଏ ଦୁହେଁ ସେ ମନ୍ଦିରକୁ ଯାଇ ଦେବୀପୂଜା କରି ବଳି ଦେଉଥିବା ସମୟରେ କଳାବନ୍ତୀ ପ୍ରବିଷ୍ଟ ହୋଇ ଦେଖିଲେ ଯେ, ସେହି ମନ୍ଦିର ପାର୍ଶ୍ୱରେ ଗୋଟିଏ ଶୋଣିତ ସ୍ରୋତ ବହି ଯାଉଅଛି । ଆହା ! କି ଦୁଃଖର ବିଷୟ ! ଏଠାରେ କାହିଁକି ଶତଶତ ପଶୁହତ୍ୟା କରନ୍ତି । ବୋଧହୁଏ ଏମାନେ ବଡ଼ ନିର୍ଦ୍ଦୟ । ଭକ୍ତିବଶତଃ ଏପରି କାର୍ଯ୍ୟ କରନ୍ତି ନାହିଁ; ମାତ୍ର ଏମାନେ ମାଂସାଶୀ ହେବାରୁ ଏପରି କାର୍ଯ୍ୟ କରୁଅଛନ୍ତି । ଏପରି କଳାବନ୍ତୀ ଭାବ ଭାବ କାଳୀ

ଦର୍ଶନକରି ବମ୍ବାକୁ ଫେରିଲେ । ସାୟଂକାଳରେ ବାୟୁସେବନ ନିମିତ୍ତ ଗମନ କରିବାପାଇଁ କଳାବନ୍ତ ଗମନ କଲାବେଳେ ଦେଖିଲେ ଯେ ଅନେକ ଲୋକ ସମବେତ ହୋଇଅଛନ୍ତି, ସାଧାରଣତଃ ଦୁଇସହସ୍ରରୁ ଅଧିକ ଅଶ୍ୱଯାନ ଥିବ ରହିଅଛି । କଳାବନ୍ତ ସେଠାରେ କେତେକାଳ ଯାପନ କଲେ । ବଣ୍ଟିକଚନ୍ଦ୍ର ତର୍କବାଚସ୍ପତି ଇଂରାଜୀ ବିଦ୍ୟାରେ ଧୁରନ୍ଧର । ତାହାଙ୍କର ବୟଃକ୍ରମ ପ୍ରାୟ ସପ୍ତତି ବର୍ଷ ହେବ । ଏହି ମହାତ୍ମାଙ୍କର କଥାବାର୍ତ୍ତା ଓ ବେଶଭୂଷା, ଇଂରାଜମାନଙ୍କ ତୁଲ୍ୟ ଏବଂ ନିଜ ପତ୍ନୀ ସହିତ ଗୋଟିଏ ଅଶ୍ୱଯାନରେ ବସିଅଛନ୍ତି । ହରପ୍ରିୟା ଅଙ୍ଗୁଳି ଦେଖାଇ କହିଲେ—"ଏହି ପୋଲଷ୍ଟୀଡ଼ା ସ୍ଥାନରେ ଉପସ୍ଥିତ ହେବା ଭଦ୍ର ସନ୍ତାନମାନଙ୍କ ନାମ କହିବା ହେଉନ୍ତୁ ।"

ବଣ୍ଟିକଚନ୍ଦ୍ର—ପଟିଆଲା ମହାରାଜ, କୁଚ୍‌ବିହାର ମହାରାଜ, ଦ୍ୱାରବଙ୍ଗ ମହାରାଜ, ମହାରାଜ ଯତୀନ୍ଦ୍ରମୋହନ ଠାକୁର ପ୍ରଭୃତି ହିନ୍ଦୁ ମହାରାଜମାନେ; ଏଠା ବଡ଼ଲାଟ, ଛୋଟଲାଟ, ଓଡ଼ିଶା କମିଶନର୍, କର୍ଣ୍ଣେଲ୍ ପ୍ରଭୃତି ଇଉରୋପୀୟନ୍ ଭଦ୍ର ସନ୍ତାନମାନେ ଉପସ୍ଥିତ ଅଛନ୍ତି ।

ହରପ୍ରିୟା—ବାବୁ କେଶବଚନ୍ଦ୍ର ସେନ ଆପଣାର ଦୁହିତାକୁ କେଉଁ ମହାରାଜଙ୍କୁ ପ୍ରଦାନ କରିଅଛନ୍ତି ?

ବଣ୍ଟିକଚନ୍ଦ୍ର – ଏହି କୁଚ୍‌ବିହାର ମହାରାଜଙ୍କୁ ପ୍ରଦାନ କରିଅଛନ୍ତି ଏଥିରୁ ବ୍ରାହ୍ମଧର୍ମର ଉନ୍ନତି ହୋଇପାରିବ ନାହିଁ ।

ହରପ୍ରିୟା—ସବିଶେଷରେ କହିବା ହେଉନ୍ତୁ ।

ବଣ୍ଟିକଚନ୍ଦ୍ର—ରାଜା ରାମମୋହନ ରାୟ ଏହି ବ୍ରାହ୍ମଧର୍ମର ସଂସ୍ଥାପକ ଅଟନ୍ତି । ଏହି ମହାତ୍ମା ଇଂଲଣ୍ଡ ଗମନକରି ବ୍ରାହ୍ମଧର୍ମ ପ୍ରଚାର କରୁ କରୁ ପ୍ରାଣତ୍ୟାଗ କଲେ । କେଶବ ବାବୁ ଏହି ଧର୍ମାବଲମ୍ବୀ ଥିଲେ । ଅସାମାନ୍ୟ ଓ ପ୍ରବଳ ଧୀଶକ୍ତି ଯୋଗୁଁ ଅଳ୍ପ ସମୟରେ ସଂସ୍କୃତ ଓ ଇଂରାଜୀ ବିଦ୍ୟାରେ ପାରଦର୍ଶିତା ଲାଭକରି ବ୍ରାହ୍ମଧର୍ମର ପ୍ରଚାରକ ହେଲେ । କଲିକତାରେ ଅନେକ ଦିନ ବ୍ରାହ୍ମଧର୍ମ ବିଷୟରେ ବକ୍ତୃତା ପ୍ରଦାନ କରି ଅନେକ ଲୋକଙ୍କୁ ସ୍ୱଧର୍ମରେ ଦୀକ୍ଷିତ କରାଇଥିଲେ । ଏହି ଧର୍ମରେ ସର୍ବଭୂତ ଦୟା,

ଏକୋବ୍ରହ୍ମଃ; ପିତୁଳା ପୂଜା ନାହିଁ, ଜାତଭେଦ ନାହିଁ, ସୁରାପାନ ଗର୍ହିତ । କେଶବ ବାବୁ ଇଂଲଣ୍ଡ ଗମନ କରି ବହୁଦିବସ ଇଂଲଣ୍ଡର ପ୍ରତି ପଲ୍ଲିରେ ବ୍ରାହ୍ମଧର୍ମ ବିଷୟରେ ବକ୍ତୃତା ପ୍ରଦାନ କରିଥିଲେ । ଇଂଲଣ୍ଡବାସୀ ସମସ୍ତେ ଏହି ମହାତ୍ମାଙ୍କ ବକ୍ତୃତାରେ ମୋହିତ ହୋଇ ବ୍ରାହ୍ମଧର୍ମର ମର୍ମ ଗ୍ରହଣ କରି ସେହି ଧର୍ମରେ ଦୀକ୍ଷିତ ହେବାକୁ ବସିଲେ । କେଶବ ବାବୁ କହିଲେ ବାଳିକାର ବୟସ ଚତୁର୍ଦ୍ଦଶ ବର୍ଷରୁ ଊର୍ଦ୍ଧ୍ୱ ନ ହେଲେ କଦାପି ବିବାହ ଦେବାକୁ ହେବନାହିଁ । ଏହି ମତ ଶ୍ରବଣ କରି ସମସ୍ତ ଇଂଲଣ୍ଡୀୟମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଆଜିକାଲି ଭାରତ ଓ ଇଂଲଣ୍ଡରେ ଏକମାତ୍ର ବ୍ରାହ୍ମମତ ପ୍ରଚ୍ଛର ହୋଇଥାଆନ୍ତା । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ମାତ୍ର କେଶବ ବାବୁ ଏହି ଧର୍ମ-ବୃକ୍ଷ ଭଲରୂପେ ବଢ଼ାଇ ଆପେ କୁଠାର ଧରି ମୂଳ ଛେଦନ କଲେ ।

ହରପ୍ରିୟା—କାହିଁକି ସେପରି କଲେ ?

ବିଶ୍ୱଜିତ୍—କୁଚ୍‌ବିହାର ମହାରାଜଙ୍କ ସହିତ ସମ୍ବନ୍ଧ କରିବା ନିମନ୍ତେ ଅଳ୍ପବୟସ୍କା ନିଜ ଦୁହିତାଙ୍କୁ ଏହି ମହାତ୍ମାଙ୍କୁ ବିବାହ ଦେଲେ । ଅତଏବ ବ୍ରାହ୍ମଧର୍ମ ପ୍ରତି ଇଂଲଣ୍ଡୀୟମାନଙ୍କ ମନ ବଳିଲା ନାହିଁ । ତଦବଧି ବ୍ରାହ୍ମଧର୍ମର କର୍ମବିକାଶ ହୋଇପାରିଲା ନାହିଁ । ମାତ୍ର କ୍ରମଶଃ ଏହି ଧର୍ମ ହ୍ରାସ ହେଲା ।

କଳାବତୀ ବ୍ରାହ୍ମଧର୍ମର ମର୍ମ ବୁଝି କ୍ରୀଡ଼ାପ୍ରତି ଦୃଷ୍ଟି ଦେଲେ । କ୍ରୀଡ଼କମାନେ ଅଶ୍ୱାରୋହଣପୂର୍ବକ ଉଲ୍‌କାସମ ଅଗ୍ନିମୟ ବର୍ତ୍ତୁଳ ନେଇ କ୍ରୀଡ଼ା କରୁଅଛନ୍ତି । ଦର୍ଶକମଣ୍ଡଳୀର ଆନନ୍ଦସାଗର ପରିବର୍ଦ୍ଧିତ ହେଉଅଛି । ଦର୍ଶକମାନଙ୍କରୁ କେତେ କଳାବତୀର ଅଲୌକିକ ରୂପ ଲାବଣ୍ୟ ସନ୍ଦର୍ଶନରେ ବିମୋହିତ ହୋଇ ସେ ଏକାକିନୀ ଅଶ୍ୱଯାନରେ ଉପବିଷ୍ଟ ଥିବାରୁ ଏକାଗ୍ର ନୟନରେ ତାହାଙ୍କୁ ଗୃହିଁ ରହିଲେ । ମାତ୍ର କିଛିହିଁ ପଚାରି ପାରିଲେ ନାହିଁ । କ୍ରୀଡ଼ାଦର୍ଶନ କଲା ବାଦ୍ କଳାବତୀ ନିଜ ଆବାସକୁ ଆସିବାକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଇଉରୋପୀୟାନ୍‌ମାନେ ବାସ କରିଥିବା ପଲ୍ଲି ଦେଇ ଗାଡ଼ି ଚଳାଇବାକୁ ଗାଡ଼ିବାଲାକୁ ଆଦେଶ ଦେବାରୁ ତଦନୁସାରେ ସେ ଗାଡ଼ି ଚଳାଇଲା । ଇତିମଧ୍ୟରେ କେତେ ସୁରାପାନରେ କ୍ଷୀନ ହରାଇ

ବାବୁଙ୍କପରି ପ୍ରଳାପ ବଚନ କହି ଇତସ୍ତତଃ ପଡ଼ି ରହିଅଛନ୍ତି । ପରଦିବସରେ କଲିକତା ଟାଉନ୍‌ହାଲ୍‌ରେ ଗୋଟିଏ ବୃହତ୍ ଅଧିବେଶନ ହୋଇଥିଲା । ସେଠାରେ ଅନେକେ ସମବେତ ହୋଇଥିଲେ । ଏମାନଙ୍କ ମଧ୍ୟରେ ଲାଲମୋହନ, ଅମରେନ୍ଦ୍ରନାଥ, ଶ୍ରୀପଞ୍ଚପଦ ବାନାର୍ଜି, ଶିବଚନ୍ଦ୍ର, ସୀତାନାଥ ଘୋଷାଲ୍ ପ୍ରଭୃତି ଭଦ୍ରଲୋକମାନେ ପ୍ରଧାନ ଥିଲେ । ହିନ୍ଦୁ-ଧର୍ମର ପ୍ରାଧାନ୍ୟ ଲୋକଙ୍କୁ ପ୍ରବୋଧ କରି ସୁଶୃଙ୍ଖଳ ଭାବରେ ପ୍ରଚାର କରିବାଲାଗି ଶ୍ରୀବିବେକାନନ୍ଦ ସରସ୍ୱତୀ ବକ୍ତୃତା ପ୍ରଦାନ କରୁଥିବା ସମୟରେ କଳାବତୀ ସଭାରେ ପ୍ରବିଷ୍ଟ ହୋଇ ମନେ ମନେ ଭାବନା କଲେ । —"ହା କି ସୁନ୍ଦର ବିଷୟ ! ଏଠାରେ ମଧ୍ୟ ହିନ୍ଦୁଧର୍ମ ଚର୍ଚ୍ଚା ହେଉଅଛି ଏବଂ ହିନ୍ଦୁଧର୍ମ ଶୁଣିବାଲାଗି ନବ୍ୟସଭ୍ୟମାନେ ମଧ୍ୟ ସବର୍ଗରେ ଆସୁଅଛନ୍ତି । ଦେଖିବା ଅବଶେଷରେ ଏହାର ଫଳ କି ହେବ" । ଏଣେ ଆନନ୍ଦମୋହନ ବୋଷ ଅମରେନ୍ଦ୍ର ବାବୁଙ୍କୁ ଡାକି କହୁ ଅଛନ୍ତି ।

ଆନନ୍ଦ—ଏହି ସର୍ବାଙ୍ଗ ସୁନ୍ଦରୀ ଯୁବତୀ କେଉଁଠାରୁ ଆସିଅଛନ୍ତି । ଏହାଙ୍କର ଅଙ୍ଗସୌଷ୍ଠବ ଓ ମୁଖ ବିଳାସ ଦେଖିଲେ ବୋଧହୁଏ ଏ ଜଣେ ବିଦ୍ୟାବତୀ ହୋଇଥିବେ । ଏ ଗୁଣବତୀ ହୋଇନଥିଲେ ଏଠାରେ କଦାପି ପ୍ରବିଷ୍ଟ ହୋଇ ନ ଥାନ୍ତେ । ଭାଗ୍ୟଥିଲେ ଏହି ଯୁବତୀଙ୍କ ମୁଖରୁ ପଦେ ଅଧେ ଶୁଣି ଚରିତାର୍ଥ ହୁଅନ୍ତାଇଁ । ଅମରେନ୍ଦ୍ର ! ତାହାର ଉପାୟ କର ।

ଅମର—ହେଉ ସେପରି କରିବା । ସେହିକ୍ଷଣି ଅମରେନ୍ଦ୍ର ଉମେଶଚନ୍ଦ୍ର ବାବୁଙ୍କ କର୍ଣ୍ଣରେ କହିଲେ । —"ଏହି ଗୁଣବତୀ ଆଜି ସଭାରେ ପଦେ ଅଧେ କହିବାପରି ବନ୍ଦୋବସ୍ତ କରିବା ହେଉନ୍ତୁ" ।

ଉମେଶଚନ୍ଦ୍ର ବୟୋବୃଦ୍ଧ ମାନ୍ୟ ଏବଂ ପଣ୍ଡିତ ହେବାଯୋଗୁଁ ତାହାଙ୍କ ବଚନ ସଭାସଦ୍‌ଗଣ ପାଳନ କରିବେ । ତାହାଙ୍କର ଏହି ଦୃଢ଼ବିଶ୍ୱାସ ଥିଲା । ଯେତେବେଳେ ବିବେକାନନ୍ଦ ସରସ୍ୱତୀଙ୍କର ବକ୍ତୃତା ସମାପନ ହେଲା ତାହାଙ୍କୁ ଅଭିବାଦନ କରିବା ଲାଗି ବାବୁ ଉମେଶଚନ୍ଦ୍ର କଳାବତୀଙ୍କୁ ନିମନ୍ତ୍ରଣ କଲେ । କଳାବତୀ ବାବୁଙ୍କ ପ୍ରାର୍ଥନାରେ ସମ୍ମତି ପ୍ରଦାନ କରି ବସିବା ସ୍ଥାନରେ ଦଣ୍ଡାୟମାନ ହୋଇ କହିବାକୁ ଲାଗିଲେ ।

ଦର୍ଶକମଣ୍ଡଳୀ ଦଣ୍ଡାୟମାନା କଳାବତୀଙ୍କୁ ଦେଖି ଆନନ୍ଦ ସହ ପ୍ରାର୍ଥନା କଲେ । —"ମଞ୍ଚୋପରି ଅଧିରୋହଣ କରି କହିବା ହେଉନ୍ତୁ" ।

କଳାବତୀ—(ମଞ୍ଚୋପରି ଅଧିରୂଢ଼ ହୋଇ) ମହାଶୟବର୍ଗ ! ହିନ୍ଦୁଧର୍ମ ବିଷୟରେ ଯାହା ବିବେକପ୍ରଦ ସରସ୍ୱତୀ କହିଅଛନ୍ତି ତାହା ସମସ୍ତଙ୍କର ବିବେକପ୍ରଦ ଅଟେ । ସ୍ୱଧର୍ମ ପାଳନ ସର୍ବଭୂତଦୟା କର୍ତ୍ତବ୍ୟ, ମଦ୍ୟପାନ ଏବଂ ପରଧନାପହରଣ ଗର୍ହିତ । ଏହି ବିଷୟରେ ଯାହା ମହାଶୟ ସବିଶେଷରେ କହି ଯାଇଅଛନ୍ତି ଅନେକେ ଶତମୁଖରେ ଧନ୍ୟବାଦ ଦେଲେମଧ୍ୟ ତାହାଙ୍କର ଋଣ ପରିଶୋଧନ କରିପାରିବୁ ନାହିଁ । ଈଶ୍ୱର ଏହି ମହାତ୍ମାଙ୍କୁ ଚିରଜୀବୀ କରନ୍ତୁ । ସଂସ୍କୃତ ହିନ୍ଦୁଧର୍ମ ଏହାଙ୍କଦ୍ୱାରା ଜଗତରେ ପ୍ରଚରିତ ହେଉ । କଳାବତୀ ଭଦ୍ରମଣ୍ଡଳୀରେ ପ୍ରଶଂସିତା ଓ ପରିଚିତା ହୋଇ ନିଜ ଆବାସକୁ ପ୍ରସ୍ଥାନ କଲେ । କଳାବତୀ ବ୍ରାହ୍ମଧର୍ମ ଓ ହିନ୍ଦୁଧର୍ମର ମର୍ମବୁଝି ଖ୍ରୀଷ୍ଟଧର୍ମ ବୁଝିବା ନିମନ୍ତେ ମନ ବଳାଇଲେ । ମାତ୍ର ଇଂରାଜି ନ ପଢ଼ିଲେ ଖ୍ରୀଷ୍ଟଧର୍ମ ଭଲରୂପେ ଜାଣିବାକୁ ହେବନାହିଁ ଅତଏବ ଇଂରାଜି ବିଦ୍ୟା ଶିକ୍ଷା କରିବାର ଆବଶ୍ୟକ । ଏଠାରେ କଳାବତୀ ରହି ବେଥୁନ୍ କଲେଜରେ ଇଂରାଜି ବିଦ୍ୟା ଶିକ୍ଷା କରିବା ନିମନ୍ତେ ଦୃଢ଼ ସଙ୍କଳ୍ପ କଲେ ଏବଂ ତଦବଧି ଛଅ ବର୍ଷ ପର୍ଯ୍ୟନ୍ତ ଉକ୍ତ କଲେଜରେ ଇଂରାଜି ବିଦ୍ୟାଭ୍ୟାସ କଲେ । ସଂସ୍କୃତ ବିଦ୍ୟାରେ ସମ୍ପୂର୍ଣ୍ଣ ଜ୍ଞାନ ଥିବା ଯୋଗୁଁ, ଅବଲୀଳାକ୍ରମେ ତାହାଙ୍କୁ ଇଂରାଜି ବିଦ୍ୟାଶିକ୍ଷା କରିବାକୁ ହେଲା । ତିନିବର୍ଷ ମଧ୍ୟରେ କଳାବତୀ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାରୁ ଶିକ୍ଷକମାନେ ଓ ସହାଧ୍ୟାୟୀମାନେ ଏହି ଯୁବତୀର ପ୍ରବଳ ଧୀଶକ୍ତି ଅବଲୋକନ କରି ଚମତ୍କୃତ ଓ ବିମୋହିତ ହେଲେ । ପ୍ରବେଶିକାରେ ଉତ୍ତୀର୍ଣ୍ଣ ହେବା ପୂର୍ବେ ଅନେକ ଇଂରାଜି ପୁସ୍ତକ ଅଧ୍ୟୟନ କରିଥିଲେ । ପଶ୍ଚାତରେ ଆଉ ତିନିବର୍ଷ ସେହି କଲେଜରେ ପଢ଼ି ସର୍ବୋତ୍କୃଷ୍ଟ ଛାତ୍ରୀ ହୋଇ ବି. ଏ. ଉପାଧି ଗ୍ରହଣ କଲେ । କଳାବତୀ ପାଠପଢ଼ିବା ସମୟରେ ସହାଧ୍ୟାୟିନୀମାନଙ୍କ ସହିତ ସୁସ୍ନେହ ଓ ସରଳ ଭାବରେ ଏବଂ ଶିକ୍ଷକ-ମାନଙ୍କ ସହିତ ଭକ୍ତିଭାବରେ କାଳ କାଟୁଥିଲେ । ଏହାଙ୍କର ସୌଜନ୍ୟ ଜନସମାଜର ମନୋହରଣ କରୁଥିଲା । କଳାବତୀ ପଢ଼ିବା ସମୟରେ ସ୍ୱର୍ଣ୍ଣମୟୀ ତାହାଙ୍କର ସହାଧ୍ୟାୟିନୀ ଥିଲେ । ଦୁହେଁ ସମବୟସ୍କା ଓ ସୁଶୀଳା

ଥିବାରୁ ସ୍ନେହ ସୂତ୍ରରେ ଆବଦ୍ଧ ହେଲେ । ସ୍ୱର୍ଣ୍ଣମୟୀ କଳାବତୀଙ୍କୁ ଅସାମାନ୍ୟ ଧୀସମ୍ପନ୍ନା ଦେଖି ତାହାଙ୍କୁ ପଚାରିଲେ ।—"ମୁଁ ଅତ୍ୟନ୍ତ ଅଧ୍ୟବସାୟ ଓ ପରିଶ୍ରମ ସହ ବିଦ୍ୟାଭ୍ୟାସ କଲେ ମଧ୍ୟ ଆପଣଙ୍କ ସହିତ ସମକକ୍ଷ ହୋଇ ପାରୁନାହିଁ ଏବଂ କି ଉପାୟ ଅବଲମ୍ବନ କଲେ ମୋର ଧୀଶକ୍ତି ଆପଣଙ୍କ ପରି ହେବ ?"

କଳାବତୀ—ଆପଣ ମୋ ସହିତ ବିଦ୍ୟାଭ୍ୟାସ କରନ୍ତୁ । ଅବଶ୍ୟ ଆପଣଙ୍କ ଧୀଶକ୍ତି ବୃଦ୍ଧି ହେବ ।

ତଦବଧି ସ୍ୱର୍ଣ୍ଣମୟୀ କଳାବତୀଙ୍କ ସହିତ ଅଧ୍ୟୟନ କଲେ । କଳାବତୀ ସ୍ୱର୍ଣ୍ଣମୟୀଙ୍କୁ ପଢ଼ିବା ମାର୍ଗ ଭଲରୂପେ ବତାଇ ଦେବାରୁ ସ୍ୱର୍ଣ୍ଣମୟୀଙ୍କ ଧୀଶକ୍ତି କ୍ରମଶଃ ଅଭିବୃଦ୍ଧି ହେଲା । ସ୍ୱର୍ଣ୍ଣମୟୀ ଇଷ୍ଟଲାଭରେ ସାତିଶୟ ସନ୍ତୁଷ୍ଟା ଲାଭ ହୋଇ ଅନ୍ତର ସହ ଧନ୍ୟବାଦ ଦେଲେ । କଳାବତୀ ବୈଷ୍ଣବଧର୍ମର ପରିଚୟ ନେବାଲାଗି କଲିକତା ପରିତ୍ୟାଗ କରି ଗୋକୁଳ ବୃନ୍ଦାବନ ଯିବାକୁ ଦୃଢ଼ ସଂକଳ୍ପ କଲେ । ଏହି ସମୟରେ କଲିକତା ନିବାସୀମାନେ କଳାବତୀଙ୍କୁ ଆଉ କେତେକାଳ କଲିକତାରେ ରହିବାକୁ ଅନୁରୋଧ କରନ୍ତେ କଳାବତୀ କହିଲେ ।—"ଘରଚର କେତେ କେତେ ପୁଣ୍ୟାଶ୍ରମ ଭ୍ରମଣ କରି ଫେରି ଏଠାକୁ ଆସିବ ।"



# ତୃତୀୟ ପରିଚ୍ଛେଦ

## ବୃନ୍ଦାବନ ମହାତ୍ମ୍ୟ

କଳାବତୀ ବୃନ୍ଦାବନ ଯିବା ମାର୍ଗରେ ବାରାଣସୀ ତାହାଙ୍କର ଦୃଷ୍ଟିପଥରେ ପଡ଼ିଲା । ସେଠାରେ କେତେକାଳ ଅବସ୍ଥାନ କରି ପଣ୍ଡିତ-ମାନଙ୍କଠାରେ ନିଜ ଗୁଣର ପରିଚୟ ଦେଲେ । ପଣ୍ଡିତମାନେ ତାହାଙ୍କର ସଂସ୍କୃତ ବିଦ୍ୟାରେ ପାରଦର୍ଶିତା ଦେଖି ଚମତ୍କୃତ ଓ ସନ୍ତୁଷ୍ଟ ହେଲେ । ଥରେ ପଣ୍ଡିତ ସଦାଶିବ ଶାସ୍ତ୍ରୀ କଳାବତୀଙ୍କ ନାମ ଧାମ ଓ ବର୍ଣ୍ଣାଶ୍ରମ ବୁଝି ପଚାରିଲେ ।

ସଦାଶିବ—ଆପଣ କେତେକାଳଯାଏ ଏପରି ଅବସ୍ଥାରେ ରହିବା ହେବେ ?

କଳାବତୀ—ଆପଣଙ୍କ ଉଦ୍ଦେଶ୍ୟ ବୁଝିପାରିଲି ନାହିଁ ।

ସଦାଶିବ—ଆମ୍ଭର ଉଦ୍ଦେଶ୍ୟ ଏହି ଯେ, ଆପଣ କେତେକାଳ ଅବିବାହିତା ହୋଇ ରହିବେ ?

କଳାବତୀ—ଦେଶ ଭ୍ରମଣରେ ମୋର ମନ ବଳି ଅଛି । ମୋର ମନୋରଥ ପୂର୍ଣ୍ଣ ହେଲା ବାଦ ଗୃହାସ୍ଥାଶ୍ରମ ଗ୍ରହଣ କରିବି । ଶାସ୍ତ୍ରୀ ଆଉ କିଛି ପ୍ରଶ୍ନ ନକରି ମୌନ ହେଲେ, କଳାବତୀ ଉଦ୍ଦେଶ୍ୟ ସ୍ଥାନକୁ ଗମନ କଲେ । କଳାବତୀ ଦ୍ୱାବିଂଶତି ବର୍ଷ ବୟଃକ୍ରମ ସମୟରେ ବୃନ୍ଦାବନରେ ପ୍ରବିଷ୍ଟ ହେଲେ । ସେ ଆମ୍ଭମାନଙ୍କ ଭକ୍ତମନ୍ତ୍ର ଓ ପ୍ରେମ-ଦାୟକ ଶ୍ରୀ ରାଧାଗୋବିନ୍ଦଙ୍କ ବିଳାସ କ୍ଷେତ୍ରମାନ ଦ୍ୱାଦଶ ବନ ଓ ପୁଣ୍ୟାଶ୍ରମମାନ ପରିକ୍ରମା କରୁଥିଲେ ଏବଂ ପରିକ୍ରମା କରୁଥିବାବେଳେ ସ୍ଥାନେ ସ୍ଥାନେ ଶ୍ରୀକୃଷ୍ଣଙ୍କ ସାଙ୍କେତିକ ଚିହ୍ନମାନ ଦେଖି ସାତିଶୟ ଆନନ୍ଦିତ ହେଉଥିଲେ । ସନ୍ନିକଟ ବନମାନଙ୍କରେ ବୈଷ୍ଣବମାନେ ଆଶ୍ରୟ ନେଇ ସତତ ଭଗବଦ୍ ବିଷୟ ପର୍ଯ୍ୟାଲୋଚନାରେ

କାଳ କାଟୁଥିବାର ଦେଖି ସେ ଚିରକାଳ ସେଠାରେ ବାସ କରିବାକୁ ମନ ବଳାଇଥିଲେ । ଦୁଇ ମାସ ମଧ୍ୟରେ ବୃନ୍ଦାବନର ସମସ୍ତ ମନ୍ଦିର ସେ ଦର୍ଶନ କଲେ । ଦିନେ ଗୋବିନ୍ଦଜୀଉଙ୍କ ମନ୍ଦିରକୁ ଗିବା ସମୟରେ ସେଠାରେ ଗୃହେଜଣ ବଙ୍ଗାଳି ସ୍ତ୍ରୀ ମଠାଧିକାରୀଙ୍କର ସେବା କରୁଥିଲେ । କଳାବତୀଙ୍କ ଅଲୌକିକ ଶୋଭା ସନ୍ଦର୍ଶନରେ ମଠାଧିକାରୀ ମୁଗ୍ଧ ହୋଇ ମଞ୍ଜୁବାଣୀକୁ କହିଲେ ।

ଅଧିକାରୀ—ଏହି ଯୁବତୀର ନାମ ଧାମ ପଚାରି ଆସ ।

ମଞ୍ଜୁ—ଆଜ୍ଞା, ସେହିପରି ପଚାରିବି । ଯାଉଛି ।

ମଞ୍ଜୁବାଣୀ ମନ୍ଦିରକୁ ଯାଇ ଦେଖିଲେ ଯେ କଳାବତୀ ଈଶ୍ୱର ଧ୍ୟାନରେ ରତ ଅଛନ୍ତି । ତେବେ ସେ ମନେ ମନେ ବିଚାର କଲେ ।

ମଞ୍ଜୁ—ଏହି ଗୁଣବତୀ ଆମ୍ଭ ମେଳାରେ ରହିଲେ ଆମ୍ଭେମାନେ ଭାଗ୍ୟବତୀ ହେଉନ୍ତୁ ।

ଏହି ସମୟରେ କଳାବତୀ ମୁହଁ ବୁଲାଇ ଦେଖିଲେ ଯେ ସମ୍ମୁଖରେ ମଞ୍ଜୁବାଣୀ ଦଣ୍ଡାୟମାନା ।

କଳାବତୀ—ଆପଣ କେଉଁଠାରେ ନିବାସ କରିଅଛନ୍ତି ? କି କାର୍ଯ୍ୟରେ ନିଯୁକ୍ତ ?

ମଞ୍ଜୁ—ଅମ୍ଭେ ବୈଷ୍ଣବଧର୍ମ ଶାସ୍ତ୍ରାନୁସାରେ ଭେକ ନେଇଅଛୁଁ । ସମ୍ପ୍ରତି ଗୋବିନ୍ଦଜୀଉଙ୍କ ଓ ତାହାଙ୍କ ଅଧିକାରୀଙ୍କ ସେବାରେ ନିଯୁକ୍ତ ଅଛୁଁ ।

କଳା—ତେବେ ଏହି ଗୋକୁଳରେ କେତେ କାଳ ହେଲା ବାସ କରିଅଛ ?

ମଞ୍ଜୁ—ଆମ୍ଭେ ଆଜକୁ ପାଞ୍ଚବର୍ଷ ହେଲା ବାସ କରିଅଛୁଁ ।

କଳା—ତୁମ୍ଭ ସଙ୍ଗେ ଆଉ କେଉଁମାନେ ଅଛନ୍ତି ?

ମଞ୍ଜୁ—ଲୀଳାବତୀ, ଚନ୍ଦ୍ରମାଳୀ ଓ ବୀଣାପାଣି ଏହି ତିନି ଜଣ ଅଛନ୍ତି ଏବଂ ଏମାନେ ମଧ୍ୟ ଆମ ଅଧିକାରିଙ୍କ ସେବାରେ ନିଯୁକ୍ତ । ଆପଣଙ୍କ ନାମ ଧାମ କହିବା ହେଉନ୍ତୁ ।

କଳା—ମୋର ନାମ କଳାବତୀ । ଜନ୍ମସ୍ଥାନ ଗମ୍ଭୁପୁର । ଭାଗ୍ୟବଶତଃ ଏଠାରେ ପ୍ରବେଷ୍ଟ ହୋଇଅଛୁ ।

ମଞ୍ଜୁ—ଆପଣ କେଉଁ ଆଶ୍ରମ ନେଇଅଛନ୍ତି ?

କଳା—ଆଜଯାଏ ଆମ୍ଭ ଆଶ୍ରମର ଠିକ୍ ହୋଇନାହିଁ । ଗୋବିନ୍ଦଙ୍କ ଇଚ୍ଛା ।

ମଞ୍ଜୁ—ଆମ୍ଭ ପ୍ରାର୍ଥନାରେ ସମ୍ମତି ପ୍ରଦାନ କରି ଏହି ମନ୍ଦିରରେ କେତେକାଳ ଅବସ୍ଥାନ କରନ୍ତୁ । ଏହି ମହାପ୍ରଭୁଙ୍କର ମହିମା ଓ ଅଧିକାରୀଙ୍କର ପ୍ରେମ-ଭକ୍ତି ଜ୍ଞାତ ହେବେ ।

କଳା—ଆମ୍ଭେମାନେ କରିବା କଥା ଜାଣିଲୁ ମାତ୍ର ଏତକ ପଚାରୁ ଯେ ଅଧିକାରୀ ଆମକୁ ପ୍ରସାଦ ଦେବେ କି ନାହିଁ ।

ମଞ୍ଜୁ—ତୁମ୍ଭଙ୍କୁ ଦେବେ ନାହିଁ ? ତୁମ୍ଭପରି ଆଉ କେତେ ଆସିଲେ ଅଧିକାରୀ ଅବଶ୍ୟ ରଖିବେ । ଅଧିକାରୀ ବଡ଼ ପ୍ରେମିକ । ତାହାଙ୍କ ପ୍ରେମ ତୁମ୍ଭେ ତ ଜାଣନାହିଁ । ତୁମ୍ଭ ଆଗେ କହିଲେ କି ହେବ ? କେତେଦିନ ଅବସ୍ଥାନ କରନ୍ତୁ । ଯେତେବେଳେ ତୁମ୍ଭେ ତାହାଙ୍କ ପ୍ରେମଭକ୍ତି ଜ୍ଞାତହେବ ସେତେବେଳେ ତାହାଙ୍କୁ ନ ଛାଡ଼ି ସତତ ତାହାଙ୍କ ସେବାରେ ଲାଗିଥିବ ।

କଳା—ମଞ୍ଜୁବାଣି ! ପଛେ ଏକଥାମାନ ବୁଝିବା । ଆମ୍ଭେ ଏଠାରେ ରହିବା ବିଷୟରେ ଅଧିକାରୀଙ୍କୁ ପଚାରି ଆସ ।

ମଞ୍ଜୁବାଣୀ ସହର୍ଷମନରେ ଅଧିକାରୀଙ୍କ ସମ୍ମୁଖରେ ଦଣ୍ଡାୟମାନା । ମଞ୍ଜୁବାଣୀର ମୁଖ ଓ ନୟନ ଭଙ୍ଗି ଦେଖି କାତରଭାବରେ ଅଧିକାରୀ ପଚାରିଲେ ।

ଅଧିକାରୀ—ମଞ୍ଜୁବାଣି ! କଣ କଲୁ ?

ମଞ୍ଜୁ—ସବୁ କଥା ଠିକ୍ କଲି ।

ଅଧି—କଣ ଠିକ୍ କଲୁ ?

ମଞ୍ଜୁ—ତୁମ୍ଭର ମନ ତାହାଙ୍କଠାରେ ଯେପରି ତାହାଙ୍କର ମନ ମଧ୍ୟ ତୁମ୍ଭଠାରେ ସେହିପରି ବଳିଅଛି ।

ଅଧି—ମଞ୍ଜୁବାଣି ! ମନ ବଳିବା କଥା ଆଉ, ଏଠାରେ ରହିବ ବୋଇଲେ କି ?

ମଞ୍ଜୁ—ସେ କଥା ମୋ ହାତରେ ପତ୍ର ପଠାଇଅଛନ୍ତି ।

ଅଧି—କଣ ପତ୍ର ପଠାଇଅଛନ୍ତି । କିଛି ତ କହୁନାହୁଁ ।

ମଞ୍ଜୁ—"ଅଧିକାରୀ ମୋତେ ରଖିବେକି" ? ଏହି କଥାଟି ଚିତ୍ତର ଆସବୋଲି ମୋତେ କାନେ କାନେ କହିଅଛନ୍ତି ।

ଅଧି—ମଞ୍ଜୁ ! ତାହାହେଲେ ଗୋବିନ୍ଦଜୀ ଆମ୍ଭ ମନୋବାଞ୍ଛା ସମ୍ପୂର୍ଣ୍ଣ କରିବେ । ଆଜ ଅଧିକରେ କ୍ଷୀର, ଖେଚଡ଼ି ଗୋବିନ୍ଦଜୀଙ୍କୁ ଭୋଗ କର ବୋଲି ପୂଜାରିଙ୍କୁ କହିବେ ଏବଂ ସେହିବାଟେ ଯାଇ ସୁବର୍ଣ୍ଣରମ୍ଭକୁ କହ । "ତୁମ୍ଭେ ଏଠାରେ ରହିବ ବୋଲି ଅଧିକାରୀ ପରମାନନ୍ଦିତ ହୋଇ ଅଛନ୍ତି ।"

ମଞ୍ଜୁବାଣୀ ଅଧିକରେ କ୍ଷୀର, ଖେଚଡ଼ି ଭୋଗ କର ବୋଲି ପୂଜାରିଙ୍କୁ କହି କଳାବତୀଙ୍କ ନିକଟକୁ ପ୍ରସ୍ଥାନ କଲେ ।

ମଞ୍ଜୁ—କଳାବତି ! ତୁମ୍ଭ ମନୋରଥ ଅଧିକାରୀ ଜାଣିଲେ ଏବଂ ଅତି ଆନନ୍ଦ ସହିତ ତୁମ୍ଭଙ୍କୁ ଏଠାରେ ରହିବାକୁ ଆଜ୍ଞା କରିଅଛନ୍ତି । ତେତେବେଳେ ମଞ୍ଜୁବାଣୀ ଓ କଳାବତୀ ଦୁହେଁ ମିଶି ଅଧିକାରୀଙ୍କ ସମ୍ମୁଖରେ ପ୍ରବିଷ୍ଟ ହେଲେ । କଳାବତୀ ଭକ୍ତିଭାବରେ ଅଧିକାରୀଙ୍କ ପାଦତଳେ ସାଷ୍ଟାଙ୍ଗ ଦଣ୍ଡବତ ପ୍ରଣାମ କରି ସମ୍ମୁଖରେ ଠିଆ ହୋଇଅଛନ୍ତି ।

ଅଧି—ମଞ୍ଜୁବାଣି ! ଏହାଙ୍କ ନାମ କଅଣ ?

ମଞ୍ଜୁ—ଆଜ୍ଞା, ଏହାଙ୍କର ନାମ କଳାବତୀ ।

ଅଧି—କଳାବତି ! ତୁମ୍ଭର ମାତା ପିତା ଧନ୍ୟ । ତୁମ୍ଭେ ଉତ୍ତମ ବଂଶରେ ଜନ୍ମଗ୍ରହଣ କରିଅଛ । ନୋହିଲେ କାହିଁକି ବ୍ରଜପ୍ରାପ୍ତ ହୁଅନ୍ତା । ତୁମ୍ଭଙ୍କୁ କଳାବତୀ ନାମ ଯାହା ତୁମ୍ଭ ମାତାପିତା ପ୍ରଦାନ କରିଅଛନ୍ତି ଯଥାର୍ଥରେ ତୁମ୍ଭେ କଳାବତୀ, ଏଥିରେ ଅଣୁମାତ୍ର ସଂଶୟ ନାହିଁ । ତୁମ୍ଭେ ଗୋବିନ୍ଦଜୀଙ୍କୁ ସେବା କର ଏହି ବ୍ରଜରେ ବାସ କର ।

କଳାବତୀ — ଆଜ୍ଞା, ଭାଗ୍ୟଥିଲେ ଏହିପରି କଥାମାନ ସମ୍ଭବପାରେ । ଆପଣଙ୍କ ଦର୍ଶନ ମାତ୍ରକେ ଆମ୍ଭର ସମସ୍ତ ପାପ ଦୂରୀଭୂତ ହୋଇଅଛି ଏବଂ ଆପଣଙ୍କ ଅମୃତାପ୍ଲୁତମାନ ବଚନ ଆମ୍ଭ କର୍ଣ୍ଣକୁହରରେ ପ୍ରବିଷ୍ଟ ହୋଇ ଆମ୍ଭ କଳୁଷିତ ଅନ୍ତରାତ୍ମାକୁ ମାର୍ଜିତ କରିଅଛି । ଆପଣଙ୍କ କୃପା ହେଲେ ଗୋବିନ୍ଦଜୀଉଙ୍କୁ ସେବା କରି ବ୍ରଜରେ ବାସ କରିବ ।

କଳାବତୀଙ୍କର ଏତାଦୃଶ ଅମୃତମୟ ବଚନ ଶୁଣି ଅଧିକାରୀ ଆନନ୍ଦସାଗରରେ ପ୍ଲାବିତ ହେଲେ । କଳାବତୀ ପାଞ୍ଚଦିନ ପର୍ଯ୍ୟନ୍ତ ନିମରେ ଦେଖିଲେ ଯେ ମଞ୍ଜୁବାଣୀ ପ୍ରଭୃତି ମହିଳାମାନେ ଊଷାକାଳରେ ଶଯ୍ୟା ପରିତ୍ୟାଗ କରି ରାଧାଗୋବିନ୍ଦ ନାମ ମୁଖରେ ଉଚ୍ଚାରଣପୂର୍ବକ ଭକ୍ତିଦାୟିନୀ ଯମୁନାରେ ସ୍ନାନ କରିବାକୁ ଯାʼନ୍ତି । ସ୍ନାନକରି ଆସି ମନ୍ଦିର ମାର୍ଜନା କରି ତୁଳସୀ ଓ ପୁଷ୍ପଚୟନ କରନ୍ତି । ଗୋବିନ୍ଦଙ୍କୁ ଦର୍ଶନ କରି ଚରଣାମୃତ ପାନ କରନ୍ତି । ତତ୍ପରେ ଅଧିକାରୀଙ୍କ ସେବାରେ ମନୋଯୋଗୀ ହୁଅନ୍ତି । ଏମାନଙ୍କର ଏପରି ଭକ୍ତି ଦେଖି କଳାବତୀ ମନେ ମନେ ଭାବନା କଲେ, ଭାଗ୍ୟଥିଲେ ଏତାଦୃଶ ଲାଭ ହୁଏ । ଏଣେ ଅଧିକାରୀ କନ୍ଦର୍ପ ବାଧାରେ ପୀଡ଼ିତ ହୋଇ ମଞ୍ଜୁବାଣୀକୁ କହିଲେ ।

ଅଧିକାରୀ—ମଞ୍ଜୁବାଣି ! ଅବଶ୍ୟ ଏଣିକି ଆମ୍ଭର ପ୍ରାଣ ଯିବ ।

ମଞ୍ଜୁ—ଆଜ୍ଞା, କାହିଁକି ଏପରି କହୁଅଛନ୍ତି ?

ଅଧି—ଆଜକୁ ପାଞ୍ଚଦିନ ହେଲା କଳାବତୀ ଏଠାରେ ରହିଲାଣି । କେବେହେଲେ ରସ ପ୍ରସଙ୍ଗରେ ମନ ବଳାଇ ନାହିଁ । ଦିନକୁଦିନ କାମ ବଢ଼ିଶେ ବାଧା ଦେଲାଣି । ତୁ ଦେଖି ମଧ୍ୟ ତାହାକୁ କିଛି କହୁନାହୁଁ ।

ମଞ୍ଜୁ — ମୁଁ ଗୋଟିଏ ଉପାୟ କରୁଅଛି ଶୁଣିବା ହେଉନ୍ତୁ । କାଲିକି ବ୍ୟଞ୍ଜନ ଦ୍ୱାଦଶୀ ହେବ । ସେ ତୁମ୍ଭଠାରୁ ମନ୍ତ୍ରଗ୍ରହଣ କରିବାପରି ବନ୍ଦୋବସ୍ତ କରୁଅଛି । ଯେତେବେଳେ ତୁମ୍ଭେ ତାହାକୁ ମନ୍ତ୍ରୋପଦେଶ ଦେବ, ଆମ୍ଭମାନଙ୍କୁ ଯେପରି କରିଥିଲ ସେପରି ତାହାଙ୍କୁ କଲେ ଅବଶ୍ୟ ତୁମ୍ଭ ପ୍ରେମରେ ସେ ମଜ୍ଜିବେ ।

ଅଧି—ଆଜ୍ଞା ହେଉ ତୁ ଶୀଘ୍ର ଯାଇ ସେ ବନ୍ଦୋବସ୍ତ କର ।

ମଞ୍ଜୁ—ସଖି ! କାଲିକ ବ୍ୟଞ୍ଜନ ଦ୍ୱାଦଶୀ । ଉଦ୍ଧବନ । ଅଷ୍ଟାକ୍ଷର ଗୋପାଳ ମନ୍ତ୍ର ଗ୍ରହଣ କଲେ ରାଧାଗୋବିନ୍ଦଙ୍କର ମାର୍ଜନାଦି ସେବା କରିବାକୁ ଯୋଗ୍ୟ ହେବେ ।

କଳା—ତାହାହେଲେ ଅବଶ୍ୟ ଗ୍ରହଣ କରିବ । ହେଲେ, କିଏ ମନ୍ତ୍ରୋପଦେଶ କରିବେ ?

ମଞ୍ଜୁ—ଅଧିକାରୀ କରିବେ ।

କଳାବତୀ—ହେଉ ଯେପରି ବନ୍ଦୋବସ୍ତ କର ।

ମଞ୍ଜୁବାଣୀ ଧୀରେ ଧୀରେ ଅଧିକାରୀଙ୍କ ନିକଟକୁ ଗଲେ । ଅଧିକାରୀ ମଞ୍ଜୁବାଣୀକୁ ଦେଖି ପଚାରିଲେ ! ପ୍ରିୟତମ କଅଣ କଲ ?

ମଞ୍ଜୁ—ଆଜ୍ଞା, ସବୁ ଠିକ୍ କଲି । ସେ ତୁମଠାରୁ ମନ୍ତ୍ରଗ୍ରହଣ କରିବାକୁ ଇଚ୍ଛୁକ ହୋଇଅଛନ୍ତି । ତୁମ ମନ୍ତ୍ର ପ୍ରଭାବରେ ଅବଶ୍ୟ ସେ ତୁମ ବଶ ହେବେ । ଆମ୍ଭମାନଙ୍କୁ ଆଉ ତୁମ୍ଭେ କାହିଁକି ପଚାରିବ ?

ଅଧି—କାହିଁକି ଏପରି କହୁଅଛ ? ରସବନ୍ତ !

ତୁ ମୋ ଗଳାମାଳା
ତୋତେ ଛାଡିଲେ ବୁଡ଼ିବ ମୋ ଭେଳା !

ଆଉ ଏପରି କହନା ।

ମଞ୍ଜୁ—ନା, ନା, କଥାଟି ଅଛି ଶୁଣ ।

ନୂଆଁ ନୂଆଁ ଆଦର ।
ନୂଆଁ ମିଳିଲେ ପୁରୁଣା ଦୂର ।

ଅଧି—କେତେ ଅକଲ ଜାଣୁ ତୁମେ ହୁଅ । ଏବେ ଥିବା ଗୁରୁଜଣ ଭିତରେ କିଏ ଆଗ ଆସିଥିଲା ? କଥାଟା କିପରି ଘଟିଲା ? ସବୁ ଜାଣି ଜାଣି ଏପରି କହୁଛ ।

ମଞ୍ଜୁ—ନାହିଁ ଆଜ୍ଞା, ସବୁବେଳେ ଏକାପରି ହେବକି ?

ମନ ତ ଚଞ୍ଚଳ ।
ଯା ରସ ଅଧିକ ତା ଠାରେ ଭୋଳ ।

ଏ ହେତୁରୁ ସିନା ତୁମ୍ଭରେ ଜଣା କରୁଛି ।

ଅଧି—ହେଉ ମଞ୍ଜୁ, ପଛେ ଦେଖିବୁ ନାହିଁ ?

ବ୍ୟଞ୍ଜନ ଦ୍ୱାଦଶୀ ଦିନ ଊଷାକାଳରେ ସଖିମାନଙ୍କ ସହ କଳାବତୀ ହରିନାମ ଉଚ୍ଚାରଣପୂର୍ବକ ଯମୁନାରେ ସ୍ନାନକରି ପରିଶୁଭ୍ର ପଟ୍ଟବସ୍ତ୍ର ପରିଧାନପୂର୍ବକ ମନ୍ତ୍ରଗ୍ରହଣ କରିବାଲଗି ଅଧିକାରିଙ୍କ ଗୁମ୍ଫାରେ ପ୍ରବେଶ ହେବା ସମୟରେ ଅଧିକାରୀ ରାତ ଦୁଇଦଣ୍ଡଠାରୁ ଉଠି ସ୍ନାନ ପୂଜାଦି ସମାପନ କରି ସୁବାସିତ ବସ୍ତ୍ର ପରିଧାନପୂର୍ବକ ମନ୍ତ୍ରଦେବାକୁ ପ୍ରସ୍ତୁତ ଥିଲେ ।

ଇନ୍ଦୁମତୀ ସହଚରୀଙ୍କୁ ନ ଦେଖି ଅତି ଦୁଃଖରେ ମଠ ମଠ ଭ୍ରମଣ କରୁଥିଲେ । ଦିନେ ହଠାତ୍ ମାଧବଜୀଉଙ୍କ କୁଞ୍ଜକୁ ଯାଇ ଦେଖିଲେ ଯେ ଗୋଟାମୋଟା ଜଣେ ବାବାଜୀ ସେଠାରେ ଠିଆ ହୋଇଥିଲେ । ତାହାଙ୍କୁ ଦେଖି ଇନ୍ଦୁମତୀ ପଚାରିଲେ ।

ଇନ୍ଦୁ—ବାବା, ଆମ୍ଭ ସହଚରୀଙ୍କ ଦେଖିଅଛ ?

ବାବାଜୀ—ମାତା, ଏଠାକୁ କଏ ଆସିନାହାନ୍ତି । ଆମ୍ଭ ମଠରେ ଦୁଇଜଣ ମାତାଜୀ ଅଛନ୍ତି, ସେମାନଙ୍କ ମଧ୍ୟରୁ କଏ ତୁମ୍ଭ ସହଚରୀ ?

ଇନ୍ଦୁ—ବାବା, ସେମାନଙ୍କର ନାମ କହିଲେ ଜାଣିବି ।

ବାବାଜୀ—ଜଣକର ନାମ ଚମ୍ପକଲତା ଆଉ ଜଣକର ନାମ ରାଧାମଣି ।

ଇନ୍ଦୁ—ସେମାନେ କେଉଁଠାରେ ଅଛନ୍ତି ? ଭଲା ଦେଖାଇ ଦିଅ ।

ବାବାଜୀ—(ଅଙ୍ଗୁଳି ଦେଖାଇ) ଏହି ପୁଷ୍ପ ବଗିଚାରେ ପୁଷ୍ପଚୟନ କରୁଅଛନ୍ତି ।

ଇନ୍ଦୁମତୀ ଧୀରେ ଧୀରେ ବଗିଚାକୁ ଗଲେ । ରାଧାମଣି ଏହି ନୂତନ ସୁନ୍ଦରୀଙ୍କୁ ଦେଖି ଚମ୍ପକଲତାକୁ କହୁଅଛି ।

ରାଧା—ସଖି ! ଏଣିକି ଆମ୍ଭ ଦୁଇଜଣର ଦୁଃଖ କୁଳ କୁଣ୍ଡିରେ ପଡ଼ିବ ନାହିଁ ।

ଚମ୍ପକ—କାହିଁକି ସେପରି କହୁଅଛୁ ?

ରାଧା—ଆହା ! ଅଦ୍ଭୁତ ଜାଣିନାହୁଁ ? ଅଧିକାରୀ ଆଜ ଗୋଟିଏ ନୂତନ ମାତା ଆଣିଅଛନ୍ତି ।

ଚମ୍ପକ—କାହିଁ ସେ ?

ରାଧା—ହେଇଟି ଦେଖ, ବଗିଚ୍ଚ ଅନ୍ତେ ଆସୁଅଛନ୍ତି ।

ଚମ୍ପକ—ହଁ, ଏତୋଳୁ ଆସୁ ବୁଝିବା ।

ଇନ୍ଦୁମତୀ ସେମାନଙ୍କଠାରେ ପ୍ରବିଷ୍ଟ ହେଲେ ତାହାଙ୍କୁ ଦେଖି ଚମ୍ପକଲତା ପଚାରିଲେ ।

ଚମ୍ପକ—ସଖି ! କେଉଁଠାରୁ ଆସୁଅଛ ?

ଇନ୍ଦୁ—ନା ସଖି ! ଆମ୍ଭ ସହଚରୀ ଆଜକୁ ପାଞ୍ଚଦିନ ହେଲା ଦଶୁନାହାନ୍ତି; କେଉଁଠାରେ ରହିଲେଟି ଜଣାଗଲା ନାହିଁ । ଏଣୁ ମଠ ମଠ ବୁଲୁଅଛୁ ।

ଚମ୍ପକ—ସଖି ! ଦୁଃଖ କରନା । ଏତୋରେ କେତେ ଦିନ ରହ, ସେ ନିଶ୍ଚୟରେ ବୁଲି ବୁଲି ଏତୋଳୁ ଆସିବେ । କିଏ କେଉଁଠାରୁ ବା ଆସନ୍ତୁ ମାଧବଜୀଉଙ୍କ କୁଞ୍ଜକୁ ନ ଆସି ରହିବେ ନାହିଁ । ସଖି ! ତୁମ୍ଭ ନାମ ଧାମ କୁହନ୍ତୁ ।

ଇନ୍ଦୁ—ଆମ୍ଭର ନାମ ଇନ୍ଦୁମତୀ, ଜନ୍ମସ୍ଥାନ ସମ୍ବଲପୁର । ପ୍ରିୟମ୍ବଦେ ! ତୁମ୍ଭ ଦୁଇସଖିଙ୍କ ନାମ କହିବାହେଉ ।

ଚମ୍ପକ—ମୋ ନାମ ଚମ୍ପକଲତା, ତାହାଙ୍କ ନାମ ରାଧାମଣି ।

ଇନ୍ଦୁ—ସଖି ! ମଠରେ ଜଣେ ବାବୁ ଅଛନ୍ତି, ସେ କିଏ ?

ଚମ୍ପକ—ସେ ଏ କୁଞ୍ଜର ଅଧିକାରୀ । ତୁମ୍ଭ ତାହାଙ୍କ ସହିତ କଥାବାର୍ତ୍ତା କରିନାହଁ ?

ଇନ୍ଦୁ—ଆମ୍ଭ ସହଚରୀ ବିଷୟରେ ପଚାରିବାରୁ ସେ ତୁମ୍ଭମାନଙ୍କ ଆଡ଼େ ମୋତେ ଦେଖାଇଦେଲେ ।

ଚମ୍ପକ—ହେଲେ କି ହେଲା । ଆମ୍ଭେ ବୁଝିବୁଁ ତୁମ୍ଭ ସହଚରୀ କେଉଁ କି ?

ଇନ୍ଦୁ—ପ୍ରିୟସଖି ! ଏଠାରେ ମୁଁ କପରି ରହିବ ?

ଚମ୍ପକ—ଆମ୍ଭମାନଙ୍କ ସଙ୍ଗେ ଥିବ । ଆମ୍ଭେମାନେ ଯାହା କରୁଅଛୁ ତୁମ୍ଭେ ତାହା କରିବ ।

ଇନ୍ଦୁ—ତାହା କରିବାରେ କଣ ଅଛି ? ମୁଁ ଏଠାରେ କପରି ରହିବ ?

ଚମ୍ପକ—କଅଣ ପ୍ରସାଦ ବିଷୟ ପଚାରୁଅଛ ?

ଇନ୍ଦୁ—ହଁଇ ତ ସେ କଥାଟି ।

ଚମ୍ପକ—ତୁମ୍ଭେ ବି ବାପୁଣୀ ହେଲ ସଖି ! ଆମ୍ଭେମାନେ ଥାଇ ତୁମ୍ଭକୁ ପ୍ରସାଦ ମୁଠାଏ ମିଳିବ ନାହିଁ ? ତୁମ୍ଭେ ଯେତେ ଦିନ ଏଠାରେ ଥିବ ସେତେଦିନ ପର୍ଯ୍ୟନ୍ତ ଅଧିକାରିଙ୍କୁ କହି ପ୍ରସାଦ ଦିଆଇଦେବୁଁ । ଅଧିକାରୀ ତୁମ୍ଭ ସହିତ ଭଲରୂପେ କଥାବାର୍ତ୍ତା କରିନାହାନ୍ତି । କଲେ, ଛାଡ଼ିବେ କି ? ଆହୁରି ତୁମ୍ଭ ସଖୀ ଯେଉଁଠାରେ ଥିବେ ତଲସି ତାହାଙ୍କୁ ଅଣାଇ ଦେବେ । ତୁମ୍ଭେ ତ ନୂଆଁ ତାହାଙ୍କ କଥା ତୁମ୍ଭକୁ କି ଜଣା ?

ଚମ୍ପକ—ରାଧାମଣି ! ତୁମ୍ଭେ ଇନ୍ଦୁମଣିଙ୍କଠାରେ ଥାଅ । ମୁଁ ଅଧିକାରିଙ୍କଠାକୁ ଯାଉଛି ।

ଚମ୍ପକଲତା ତରତର ହୋଇ ଅଧିକାରୀଙ୍କଠାରେ ପ୍ରବେଶ ହେଲେ । ଅଧିକାରୀ ଚମ୍ପକଲତାର ଅଙ୍ଗଭଙ୍ଗି ଦେଖି ପଚାରିଲେ ।

ଅଧି—ଚମ୍ପକ ! କାହିଁକି ଏତେ ତରତର ?

ଚମ୍ପକ—ତୁମ୍ଭଲାଗି ।

ଅଧି—ମୋ ଲାଗି ! କସ କହିଲୁ ମ ?

ଚମ୍ପକ—ବଣରି ସବୁଟ ପୋଡ଼ିଯାଉଛି ।

ଅଧି—କାହିଁକି ଚମ୍ପକ ଏତେ ନିଷ୍ଠୁର ?

ଚମ୍ପକ—ନିଷ୍ଠୁର ବୋଲୁଛ ।

ଅଧି—କସ କହ ମ ?

ଚମ୍ପକ—କଣ କହିବ । ତୁମ୍ଭେଁ ତ ଆଣି ଆମ୍ଭଙ୍କୁ ସ୍ଵଚ୍ଛନ୍ଦତା କରିବାକୁ ବସିଅଛ ।

ଅଧି—ମୁଁ ତାହାଙ୍କୁ କିଛି କଥା ଏକା ହୋଇନାହିଁ । ସେ ମୋତେ ପଚାରିଲେ, "ଆମ୍ଭ ସହଚରୀ ଏ ମଠକୁ ଆସିଅଛନ୍ତି ?" ମୁଁ କହିଲି—ସେ ଏଠାକୁ ଆସିବାର ମୋତେ ଜଣାନାହିଁ । ଏ ବଟିକାରେ ଦୁଇଜଣ ପୁଷ୍ପଚୟନ କରୁଅଛନ୍ତି । ଏମାନଙ୍କ ମଧ୍ୟରୁ ତୁମ୍ଭ ସହଚରୀ କିଏ ହୋଇଥିବେ ପରା ! ଯାଇ ଦେଖ । ଏହା ଶୁଣି ସେ ତୁମ୍ଭମାନଙ୍କଠାକୁ ଗଲେ । ଏହାଛଡ଼ା ଆଉ କିଛି ତାହା ସହିତ କଥାବାର୍ତ୍ତା କରିନାହିଁ । ଆଉ କଣ ସେ କହିଲେ କି ?

ଚମ୍ପକ—ଆଉ କିଛି ସେ କହିନାହାନ୍ତି ।

ଅଧି—କାହିଁକି ଆଉ ଏପରି ମୋତେ ବୋଇଲ ?

ଚମ୍ପକ—ନାହିଁ ଅଜ୍ଞା, ତୁମ୍ଭ ମନ ବୁଝିବା ନିମନ୍ତେ ପଚାରିଲି । ଏଥିରେ କିଛି ଦୋଷଥିଲେ କ୍ଷମା କରିବା ହେଉନ୍ତୁ ।

ଅଧି—ଏତେ କଥା କାହିଁକି ମ ? ଆଉ କିଛି କହିବାକୁ ଥିଲେ କହ ।

ଚମ୍ପକ—କହିବ ବୋଲୁଛି ସେ ଭୟ ଲଗୁଛ ।

ଅଧି—କହ ମ ତୋତେ କି ଭୟ ?

ତୁ ମୋର ସବୁ ସମ୍ପଦ ।
ତୋତେ ଛାଡ଼ିଲେ ନାହିଁ ମୋଦ ॥

ଏହି କଥାରେ ଚମ୍ପକଲତା ସାତିଶୟ ସନ୍ତୁଷ୍ଟ ହୋଇ ବଡ଼ା ସଣ୍ଟେହରେ କହିବାକୁ ଲାଗିଲେ ।

ଚମ୍ପକ—ଅଜ୍ଞା, ସେ ତରୁଣୀ ଏଠାରେ କେତେ ଦିନ ରହିବାକୁ ମନ ବଳାଇ ଅଛନ୍ତି । ଆପଣଙ୍କ ଅଜ୍ଞା ହେଲେ ଏଠାରେ ସେ ରହିବେ ।

ଅଧି—ପ୍ରସାଦ ପାଇ ରହିବା କଥାସିନା, ରହନ୍ତୁ ।

ଚମ୍ପକ—ଆଜ୍ଞା, ମୋ ସଙ୍ଗେ ଆସି ସେ ଦିନଟି ତୁମ୍ଭେ କହିଲେ ସେ ଅତି ଆନନ୍ଦରେ ଏଠାରେ ରହିବେ । ରହିଲେ ଆମ୍ଭର ସବୁ କାର୍ଯ୍ୟ ଚଳିବ ।

ଅଧି—କି କାର୍ଯ୍ୟ ଚଳିବ ? କହ ତ ଚମ୍ପକ !

ଚମ୍ପକ—ପଛେ ଜାଣିବ ଯେ ଏବେ ଆସିଲ ।

ଅଧିକାରୀ ଏହି ସମୟରେ ତିଳକ ଛାପରେ ମଣ୍ଡିତ ହୋଇ ହାତରେ ଝୁଲାଧରି ହରିନାମ ଗୁଣି ଗୁଣି ଚମ୍ପକ ସହିତ ଧୀରେ ଧୀରେ ଗୃହରୁ ଇନ୍ଦୁମଣୀଠାକୁ ଯାଉଥିଲେ । ଇନ୍ଦୁମଣୀ ଚମ୍ପକଲତା ସହିତରେ ଜଣେ ବାବାଜୀ ଆସିବାର ଦେଖି ରାଧାମଣିଙ୍କୁ ପଚାରିଲେ ।

ଇନ୍ଦୁ—ସଖି ରାଧାମଣି ! ଏ ବାବାଜୀ କିଏ ?

ରାଧା—ଏ ବାବାଜୀ ଏ କୁଞ୍ଜର ଅଧିକାରୀ ।

ଇନ୍ଦୁ—ହା ! କି ସାଧୁ ! ସାଧୁମାନଙ୍କଠାରେ ଯେତେ ଲକ୍ଷଣ ଆବଶ୍ୟକ ତେତେ ଲକ୍ଷଣରେ ପୂର୍ଣ୍ଣ । ଏହାଙ୍କ ରହି ଯେ କାଳ କାଟିବ ତାହାର ଜନ୍ମ ମଧ୍ୟ ଧନ୍ୟ ଏବଂ ତାହାକୁ ଏକା ଲୋକେ ସୁଖୀ କହନ୍ତି ।

ରାଧାମଣି ବିଚାରି କଲି, ବାବାଜୀଙ୍କଠାରେ ଏହାର ମନ ଲାଗି ରହିଲା । ତାହାଙ୍କଠାରୁ ଯେତେବେଳେ କଥା ଶୁଣିବ ଅବଶ୍ୟ ରସରେ ବୁଡ଼ି ରହିବ । ଏହାଭୁଲେ ଅଧିକାରୀ ମାତିଲେ ଆଉ ଆମ୍ଭକୁ ପଚାରିବେ ନାହିଁ ।

ଇତିମଧ୍ୟରେ ଅଧିକାରୀ ଇନ୍ଦୁମଣୀଙ୍କଠାରେ ପ୍ରବିଷ୍ଟ ହେଲେ । ଇନ୍ଦୁମଣୀ ବାବାଜୀଙ୍କୁ ଦେଖିବା ମାତ୍ରକେ ଦଣ୍ଡପ୍ରଣାମ କଲେ । ତେତେବେଳେ ଅଧିକାରୀ ଆଶିଷ ପ୍ରଦାନପୂର୍ବକ ଇନ୍ଦୁମଣୀଙ୍କୁ ଉଠିବାକୁ ଆଜ୍ଞାଦେଲେ । ଇନ୍ଦୁମଣୀ ଉଠିଲା ବାଦ ବାବାଜୀ ଚମ୍ପକଲତାକୁ ପଚାରିଲେ ।

ବାବାଜୀ—ଏହି ମାତାଙ୍କର ନାମ ଓ ଜନ୍ମସ୍ଥାନ ପଚାରିବା ହେଉ ।

ଚମ୍ପକ—ସଖି ! ତୁମ୍ଭର ନାମ ଓ ଜନ୍ମସ୍ଥାନ ବାବାଜୀ ପଚାରୁ ଅଛନ୍ତି ।

ଇନ୍ଦୁ—ମୋହର ନାମ ଇନ୍ଦୁମଣୀ । ମୁଁ ସମ୍ବଲପୁର ପାଟଣାରେ ଜନ୍ମହେଲି । ମୋ ମା ବାପା ମୋତେ ବାଲ୍ୟ ସମୟରେ ବିବାହ କରିଦେଲେ । ମୋ ଦୁରଦୃଷ୍ଟିରୁ ମୋ ଗୃହସ୍ଥ ମରିଗଲେ । ମୁଁ ନଅ ବର୍ଷରେ

ବିଧବା ହୋଇଗଲି । ମୁଁ ବିଧବା ହେବାର ଦେଖି ମୋ ମା ବାପା ଦୁଃଖରେ ପଡ଼ିଯାଇ ମରିଗଲେ । ସେତେବେଳେ ମୁଁ ଅନାଥା ହେଲି । ଜଣେ ବାବୁ ମୋ ପରେ ଦୟା କରି ମୋତେ ରଙ୍ଗପୁର ନେଇ ସେଠାରେ ପାଠ ପଢ଼ାଇଲେ । ମୁଁ ସେଠାରେ ଛଅ ବର୍ଷ ଯାଏ ପାଠ ପଢ଼ିଲି । ତତ୍‌ବାଦ ବାବୁଙ୍କ ଘରେ ଥାଇ ଖବରକାଗଜ ଓ ମତଗ୍ରନ୍ଥମାନ ପଢ଼ୁଥାଏ । ଆମ୍ଭ ସଦ୍‌ଗୁରୁ ଯେତେବେଳେ ଦେଶାଟନ କରିବାକୁ ବାହାରିଲେ ମୁଁ ସେତେବେଳେ ତାହାଙ୍କ ସଙ୍ଗେ ଆସିବାକୁ ପଡ଼ିଲି । ମୋ ଅଦୃଷ୍ଟ ଏଡ଼େ ହୀନ ଯେ, ଏବେ ସେ ମଧ୍ୟ ମୋ ନୟନରୁ ଅନ୍ତର ହୋଇଅଛନ୍ତି । ସେ ଯଦି ଏଠାରେ ଥାଆନ୍ତେ ଦୁହେଁ ମିଶି ବାବାଜୀଙ୍କ ସେବାରେ ସତତ ଲଗିଥାଆନ୍ତୁ ।



# ଚତୁର୍ଥ ପରିଚ୍ଛେଦ

## ଅଧିକାରୀଙ୍କ ମନସ୍ତାପ

ଅଧିକାରୀ ଇନ୍ଦୁମତୀର ଏହି ସରସ ବଚନମାନ ଶ୍ରବଣ କରି ତାହାଙ୍କ ସହଚରୀଙ୍କ ବିଷୟରେ କିଛି ପ୍ରଶ୍ନ କରିବାକୁ ଲାଗିଲେ ।

ଅଧି—ଇନ୍ଦୁମତି ! ତୁମ୍ଭ ସହଚରୀ ମଧ୍ୟ ବିଧବା ନା ?

ଇନ୍ଦୁ—ନାହିଁ ବାବାଜି ! ସେ ବିଧବା ନୁହନ୍ତି । ସେ ବିବାହ ମଧ୍ୟ ହୋଇ ନାହାନ୍ତି । ସେ ପଣ୍ଡିତା ଅଟନ୍ତି । ଉପଯୁକ୍ତ ପାତ୍ରରେ ବିବାହ ହେବାକୁ ଦେଶ ଦେଶ ଭ୍ରମଣ କରୁଅଛନ୍ତି । ଆଜଯାଏ ଉପଯୁକ୍ତ ପାତ୍ର ପାଇ ନାହାନ୍ତି । ବିଚାର କରେ ଆପଣଙ୍କ ପରି ସାଧୁଙ୍କ ସେବା ପ୍ରାପ୍ତ ହେଲେ ସେ ରହିଯିବେ । ଆଉ ଗୃହସ୍ଥାଶ୍ରମରେ ମନ ବଳାଇବେ ନାହିଁ ।

ଅଧି—ଇନ୍ଦୁମତି ! ବିଚାର କରନାହିଁ । ଯଦି ତୁମ୍ଭ ସହଚରୀ ଏହି ବ୍ରଜରେ ଅଛନ୍ତି, ଏଠାକୁ ନ ଆସି କେଣେ ଯିବେ ? ଏଠାକୁ ସେ ଆସିବାଯାଏ ତୁମ୍ଭେ ଅପେକ୍ଷା କର ।

ଏହାପରେ କହି ଅଧିକାରୀ ଚମ୍ପକଲତା ସହିତ ଫେରି କୁଟୀରକୁ ଗଲେ ବାଟେ ଚମ୍ପକଲତାକୁ କହିଲେ ।

ଅଧି—ଚମ୍ପକ ! ଗୁଣମଣିଟି ମିଳିଅଛି ବିଧବା ହୋଇଅଛି । ଏ ଆଉ କେଣେ ଯିବନାହିଁ । ତୁମ୍ଭମାନଙ୍କ ସଙ୍ଗେ ରହି ସୁଖରେ କାଳ କାଟିବ ।

ଚମ୍ପକ—ଆମ୍ଭ ସଙ୍ଗେ ନୁହେଁ, ତୁମ୍ଭ ସଙ୍ଗେ ।

ଅଧି—ଛଇଲ୍, କେତେ ଛଉଳି ଜାଣୁ !

ଚମ୍ପକ—ହେଉ, ସବୁ ଜଣାପଡ଼ିବ ଯେ ।

ଅଧି—କିସ ମ ମାଡଗୋଳ ଲଗିଲାପରି କଥା କହୁଛୁ । ତୋତେ ମୁଁ ଭରସା କରିଛି ତୁ ମୋତେ ନୀରସ କଥା କହୁଛୁ ।

ଚମ୍ପକ—ମୁଁ କିଛି ଖରସ କଥା କହୁନାହିଁ । ତୁମ୍ଭେ ଯେପରି ପଚାରୁଛ ମୁଁ ସେପରି କହୁଛି ।

ଅଧି—ଚମ୍ପକ ! ଏବେ କସ କରିବା ?

ଚମ୍ପକ—କେଉଁ ବିଷୟରେ ପଚାରୁଛ ?

ଅଧି—ତୋତେ ଜଣାନାହିଁ କି ?

ଚମ୍ପକ—ମୋତେ କିଛି ଜଣାନାହିଁ ।

ଅଧି—ମୋ ବାଧା ତୋତେ ଲାଗଇ ନାହିଁ ।

ଚମ୍ପକ—କି ବାଧା ଯେ ?

ଅଧି—ସେ ନୂତନ କୋମଳାଙ୍ଗୀକୁ ଦେଖିବା ଦିନଠାରୁ ମୋ ମନ ଛାଣି ଚକଟି ହେଉଅଛି । ମନର କିଛି ଥୟ ରହୁନାହିଁ । ତୁ ରକ୍ଷାକଲେ ପ୍ରାଣ ରହିବ ନୋହିଲେ ଅବଶ୍ୟ ମରିଯିବ ।

ଚମ୍ପକ—ମରିବା ଏତେ କଥା କାହିଁକି ? କସ କରିବ କହିଲ ।

ଅଧି—ଆଜରାତି କିପରି ହେଲେ ସେ ମୋ ସଙ୍ଗ ଏକାନ୍ତ ହେଲାପରି କରିବ ।

ଚମ୍ପକ—ନୂଆ ଦେଖି ବାଇ ହୋଇଗଲ ?

ଅଧି—ସତେ ବାଇ ହୋଇଗଲି । ତୁ ଏବେ ଯାଇ ତାହା ବନ୍ଦୋବସ୍ତ କର । ତୁ ସବୁ ଠିକ୍‌କରି ଆସିଲେ ଏକା ମୁଁ ପଙ୍କତକୁ ନିବି ।

ଚମ୍ପକ—ଯାଉଛି, କାହିଁକି ଏତେ ନଷ୍ଟୁର ?

ଚମ୍ପକଲତା ଅତି ତରତର ହୋଇଯାଇ ଦେଖିଲେ ଯେ ରାଧାମଣି ମାତ୍ର ବସିଥିଲେ । ଇନ୍ଦୁମଣୀଙ୍କୁ ସେ ନ ଦେଖି ଅତି କାତରଭାବରେ ରାଧାମଣିକୁ ପଚାରିଲେ ।

ଚମ୍ପକ—ସଖି ରାଧାମଣି ! ଇନ୍ଦୁମଣୀ କେଉଁଣେ ଯାଇଅଛନ୍ତି ?

ରାଧା—ଚମ୍ପକ ! ଏତେ ଆତୁର ହୋଇ କାହିଁକି ପଚାରୁଅଛ ?

ଚମ୍ପକ—କିଛି ଆତୁର ନାହିଁ, ତୁମ୍ଭ ପାଖରେ ନ ଥିବାରୁ ପଚାରୁ ଅଛି ।

ରାଧା—ସେ ଛୁଇଁବାକୁ ଦେବନାହିଁ । ଏଣୁ ଅନ୍ତରରେ ବସି ଅଛନ୍ତି ।

ଏହି କଥା ଶୁଣିବା ମାତ୍ରକେ ଦୀର୍ଘ ନିଶ୍ୱାସ ପରିତ୍ୟାଗପୂର୍ବକ ଫେରି ଅଧିକାରିଙ୍କ ନିକଟକୁ ଯାଇ ମୁଖ ଶୁଖାଇ ବସିଲେ । ଅଧିକାରୀ ଚମ୍ପକର ମୁଖ ଭଙ୍ଗି ଦେଖି ପଚାରିଲେ ।

ଅଧି—ଚମ୍ପକ ! କାହିଁକି ତୋ ମୁଖ ଶୁଖାଇ ରଖିଅଛୁ ? ସେ ଅଙ୍ଗୀକାର କଲନାହିଁ ?

ଚମ୍ପକ—ଏପରି କହୁ ନାହିଁ ଅଜ୍ଞା, ସେ ଏବେ ଆସିବାକୁ ଦେବନାହିଁ । ଓହୋ ବୋଲି ! ଅଧିକାରୀ ଦୁଃଖରେ ମୁହିଁ ମାଡ଼ି ଶଯ୍ୟାରେ ଶୋଇଲେ । ଚମ୍ପକ ଅନେକ ଆନ ଶପଥ ପକାଇ ଅଧିକାରିଙ୍କୁ ଉଠାଇ ପ୍ରସାଦ ଖୁଆଇଲେ ଏବଂ ପରେ କହିଲେ—"ଏତେ ଦୁଃଖିତ କାହିଁକି ? ଆଜ ମଝିରେ ଦୁଇଦିନ ଛିନା; ଅବଶ୍ୟ ତୁମ୍ଭ ଦର୍ଶନ କରିବ" ।

ଅଧି—ଆଣିବୁ ଚିନା ଏ ଦୁଇଦିନ ବଞ୍ଚିବ କପରି ?

ଚମ୍ପକ—ଆଜଯାଏ ଯେପରି ବଞ୍ଚୁଥିଲ ସେପରି ଏକା ବଞ୍ଚିବ ।

ଅଧି—ତୋ ମନ ଚମ୍ପକ ! ତୋ ଠାରେ ଏକା ମୋ ଆଶା ଭରସା ! ତୁ ଏପରି କହିଲେ ମୁଁ କାହାର ହେବ ?



# ପଞ୍ଚମ ପରିଚ୍ଛେଦ

## ତୁଳସୀ ବଣିଆ ବାଘ

ଏଣେ କଳାବତୀ, ଅଧିକାରୀ ଗୋବିନ୍ଦ ଦାସ ଦୁହେଁ ଗୋଟିଏ କୁଟୀରରେ ପ୍ରବେଶ ହେଲେ । ଅଧିକାରୀ ମନ୍ତ୍ରୋପଦେଶ ପ୍ରଦାନ କରିବା ପୂର୍ବେ କଳାବତୀ ସହିତ କଥୋପକଥନ କରିବାକୁ ଲାଗିଲେ ।

ଅଧି—କଳାବତି ! ପରକୀୟ ଭାବ ତୁମ୍ଭକୁ ଜଣାଅଛି ?

କଳା—ନାହିଁ ବାବାଜି ! ପରକୀୟ ଭାବ ମୁଁ ଜାଣେ ନାହିଁ ।

ଅଧି—ଶୁଣ, କଳାବତି ! ସେ ଭାବରେ ସବୁ ରସ ଅଛି । ତାହା ନ ଜାଣିଲେ ବ୍ରଜ ଭାବ କିଛି ଜାଣିପାରିବ ନାହିଁ । ଦେଶର ବନରେ ଯେଉଁ ବୈଷ୍ଣବମାନେ ଅଛନ୍ତି ସେମାନଙ୍କୁ ମଧ୍ୟ ଏ ରସ ଜଣା ନାହିଁ । ଏ ରସ ଜାଣିବାପାଇଁ ବହୁତ ଯତ୍ନ କରୁଅଛନ୍ତି ମାତ୍ର ସେମାନଙ୍କୁ ସେ ରସ ପ୍ରାପ୍ତ ହୋଇପାରୁ ନାହିଁ । ଅନେକ ଶାସ୍ତ୍ର ପଢ଼ିଲେ କଅଣ ହେବ ? ମୁଁ କହିବା ଭାବ ନ ଜାଣିଲେ କେବେ ବ୍ରଜଭାବ ଉଦୟ ହେବନାହିଁ । ବ୍ରଜଭାବ ଉଦୟ ନହେଲେ ଏ ସଂସାରରେ କି ଲଭ ଅଛି ? ଆଉ ଗୋଟିଏ କଥା କହୁଅଛି ଶୁଣିବା ହେଉ । ସନ୍ନ୍ୟାସୀମାନେ ସମସ୍ତ ସାଂସାରିକ ଧର୍ମ ତ୍ୟାଗକରି ଯେଉଁ ଭଗବାନଙ୍କୁ ପାଇବାଲାଗି ଅସହ୍ୟ କଷ୍ଟ ସହ୍ୟ କରୁଅଛନ୍ତି, ମୁନିମାନେ ମୌନବ୍ରତ ଅବଲମ୍ବନ କରି ଯେଉଁ ପରମ-ପୁରୁଷଙ୍କୁ ଆଜଯାଏ ଲଭି ନାହାନ୍ତି ଏବଂ ଯେଉଁ ପରମପୁରୁଷଙ୍କୁ ଲଭିବା ନିମନ୍ତେ ତପିମାନେ ତପରେ ନିମଗ୍ନ ରହିଅଛନ୍ତି, ସେ ପରମାତ୍ମାଙ୍କୁ ଅବଳୀଳାରେ ଗୋପାଙ୍ଗନାମାନେ ଲଠ ବସନ ଦେଇ କରଯୋଡ଼ରେ ନଚାଇଲେ । ଏ ରସରେ ଯେଉଁମାନେ ମଜ୍ଜନ୍ତି ସେମାନେ ଅବଶ୍ୟ ପରମ-ପୁରୁଷଙ୍କୁ ଲଭନ୍ତି । ହେଲେ ଆପଣଙ୍କ ମନୋଗତ ଭାବ ସ୍ପଷ୍ଟରୂପେ କହିବା ହେଉନ୍ତୁ ।

ଏହି ସମୟରେ କଳାବତୀଙ୍କ ଦକ୍ଷିଣ ବାହୁ ସ୍ପନ୍ଦନ ହେଲା । କଳାବତୀ ନିଜ ବାହୁ ସ୍ପନ୍ଦନ ହେବାର ବୁଝି ଦୁଃଖରେ ଅଭିଭୂତା ହେବାକୁ ଲାଗିଲେ । ଏହି ସମୟରେ ବାବାଜୀ କହିଲେ ।

ବାବାଜୀ—କଳାବତି ! ରସରେ ମଜ୍ଜିଲେ ଆପଣେ ସବୁ ଜାଣିବାକୁ ହେବ । କାହିଁକି ବିଳମ୍ବ କରୁଅଛ ? ଆଉ ବୃଥା ବ୍ୟଥା ମୋତେ ଦିଅନା ।

ଏହି ଅବସରରେ କଳାବତୀଙ୍କ ଦକ୍ଷିଣାଙ୍ଗରେ ଟିକ୍‌ଟିକି ପତନ ହେବାରୁ ଫେର ସ୍ନାନ କରିବାକୁ ଉଠିଲେ ।

ବାବାଜୀ—କାହିଁକି ଉଠିଲ ସୁନ୍ଦରି ! ଏଠାରେ ସକଳ ତୀର୍ଥ ଅଛି । ରାଧାଗୋବିନ୍ଦଙ୍କ ନାମ ସ୍ମରଣ କର ।

ଏହିପରି କହି କଳାବତୀଙ୍କ ହସ୍ତ ଧରିବାକୁ ଲାଗିଲେ ।

କଳା—ଅଧିକାରି ! କାହିଁକି ସେପରି ହେଉଅଛ ? କ୍ଷଣେ ସ୍ନାନ କରି ଆସୁଅଛି ।

ଅଧି—ରସ ସାଗରରେ ଶୀଘ୍ର ଅବଗାହ, ପବିତ୍ର ହେବ ।

ଅଧିକାରୀଙ୍କ ମନୋବିକାର ହେବାର ଦେଖି କବାଟ ଫିଟାଇ କଳାବତୀ ବାହାରକୁ ଆସିଲେ । ମଞ୍ଜୁବାଣୀ କଳାବତୀଙ୍କୁ ଦେଖି ପଚାରିଲେ ।

ମଞ୍ଜୁ—କଳାବତି ! ମନ୍ତ୍ରୋପଦେଶ ହେଲା କି ?

କଳା—କି କହିଁ ମନ୍ତ୍ରୋପଦେଶ ? ଏହିପରି ଜାଣିଥିଲେ ମୁଁ କଦାପି ମନ୍ତ୍ର ଗ୍ରହଣ କରିବାକୁ ଅଙ୍ଗୀକାର କରିନଥାନ୍ତି ।

ମଞ୍ଜୁ—ସଖି ! କାହିଁକି ଏତେ ବିମୁଖ ?

କଳା—କାହିଁକି ବୋଲି ପଚାରୁଅଛ ? ଏ ଅଧିକାରୀଙ୍କଠାରେ ସାଧୁଲକ୍ଷଣ ନାହିଁ । ଏହାଙ୍କଠାରେ ଭଦ୍ରଲୋକମାନେ ରହିବାକୁ ଅଯୋଗ୍ୟ । ମୋପରି ଲୋକ ଏଠାରେ କଦାପି ରହିପାରିବ ନାହିଁ । ଏହି ସମୟରେ ଅଧିକାରୀ ପଚାରିଲେ ।

ଅଧି—ସ୍ନାନ କରି ଆସୁନ୍ଥ ପରା ?

କଳା – ଛି, ଛି ତୋ ସାଧୁଲକ୍ଷଣ, ତୋତେ ଲଜ ଲାଗୁନାହିଁ ? ଏତିକି ତୋ ମନ୍ତ୍ରୋପଦେଶ ସାର । ଏଠାରେ ଥିବା ମାନ୍ତାଙ୍କମାନଙ୍କ ପରି ମୁଁ ନୁହେଁ । ସବୁ ଜାଣିଲି । ଏହି କଥାମାନ ସମସ୍ତଙ୍କଠାରେ ଜଣାଇଦେବି ।

ଏହି କଥା ଶୁଣି ଅଧିକାରୀ କଳାବଣ୍ଠଙ୍କୁ ଅନୁନୟ କରିବାକୁ ବସିଲେ । ଛି, ଛି ଅଧମ ଏପରି ତିରସ୍କାର ବଚନ କହି ମଠରୁ କଳାବଣ୍ଠ ବାହାରି ଗଲେ ।

ଯେଉଁ ବ୍ରଜଭୂମି ହିନ୍ଦୁମାନଙ୍କର ପ୍ରଧାନ ପୁଣ୍ୟ କ୍ଷେତ୍ର ଅଟେ, ଯେଉଁ ବ୍ରଜଧୂଳି ଲୋକେ ସେବା କରି ସକଳ ପାପରୁ ମୁକ୍ତ ହୁଅନ୍ତି ବୋଲି ବିଶ୍ୱାସ କରନ୍ତି, ଯେଉଁ ରାଧାକୁଣ୍ଡ, ଶ୍ୟାମକୁଣ୍ଡରେ ସ୍ନାନ କଲେ ମାନବେ ପୁନର୍ଜନ୍ମ ନ ଲଭନ୍ତି ବୋଲି ଜନରବ ଅଛି, ଯେଉଁ ଦ୍ୱାଦଶ ବନର ଶୋଭା, ସ୍ଥାନେ ସ୍ଥାନେ ଶ୍ରୀକୃଷ୍ଣଙ୍କର ସାଙ୍କେତିକ ଚିହ୍ନ, ଶ୍ରୀ ମହାପ୍ରଭୁଙ୍କର ଲୀଳା ସ୍ଥାନମାନ, ସୂର୍ଯ୍ୟତନୟା ଯମୁନାର ଅନିର୍ବଚନୀୟ ଶୋଭା, ଗିରି ଗୋବର୍ଦ୍ଧନ ବଂଶୀ ବଟ ଓ କେଳିକଦମ୍ବ, ଏମାନଙ୍କର କାହାଣୀ ଶ୍ରବଣ କଲେ ମାନବେ ଆମ୍ଭମାନଙ୍କର ମୁକ୍ତିଦାତା ପରମପୁରୁଷ ଶ୍ରୀକୃଷ୍ଣ ଏଠାରେ ଅବଶ୍ୟ ଅବତୀର୍ଣ୍ଣ ହୋଇଥିଲେ ବୋଲି ବିଶ୍ୱାସ କରିବାକୁ ହୁଏ, ଯେଉଁ ବ୍ରଜରେ ଶ୍ରୀକୃଷ୍ଣଙ୍କ ମନ୍ଦିରମାନରେ ଶ୍ରେଣୀଭେଦର ବୈରଭାବ ନାହିଁ, ଯେଉଁ ଘୋର ବନରେ ମୁନିମାନେ, ଋଷିମାନେ ଓ ବୈଷ୍ଣବମାନେ ଦୃଢ଼ାସନରେ ବସି ସର୍ବଦା ଈଶ୍ୱରଙ୍କର ଗୁଣାନୁବାଦ କରୁଅଛନ୍ତି, ଯେଉଁ ସ୍ଥାନରେ ରୂପ ସନାତନ ପ୍ରଭୃତି ଗୋସ୍ୱାମୀମାନେ ଶ୍ରୀମତୀଙ୍କ ସେବାରେ ଅନବରତ ରତ ଥା'ନ୍ତି, ବ୍ରଜବାସୀମାନଙ୍କ ପଦଧୂଳି ପାଇବା ନିମନ୍ତେ ଯେଉଁ ବ୍ରଜରେ ବ୍ରହ୍ମାଦି ଦେବଗଣ ସ୍ଥାବର ରୂପେ ଜନ୍ମଗ୍ରହଣ କରିବାକୁ ଇଚ୍ଛା କରନ୍ତି, ସେହି ବୃନ୍ଦାବନରେ ଏ ମନୁଷ୍ୟାଧମ-ବୈଷ୍ଣବ-କୁଳାଙ୍ଗାରମାନଙ୍କୁ ମଠାଧିକାରୀ ରୂପେ କିଏ ନିଯୁକ୍ତ କଲା ? ଏପରି କହି କଳାବଣ୍ଠ ଦୀର୍ଘନିଶ୍ୱାସ ପରିତ୍ୟାଗପୂର୍ବକ ଅଶ୍ରୁପୂର୍ଣ୍ଣ ନୟନରେ ବ୍ରଜଦାଣ୍ଡରେ ଯାଉଥିଲେ । ଏହି ଯୁବକ ଶିରୋମଣିଙ୍କୁ ଦେଖି ଗୋପାଳ ଦାସ ଅଧିକାରୀ ପଚାରିଲେ ।

ଅଧି—ମାତା ! କାହିଁକି କ୍ରନ୍ଦନକରି ଯାଉଅଛ ? କିଏ ତୁମକୁ ଗାଳିଦେଲା ? ନା ତୁମର ଧନ କିଏ ହରଣ କଲା ?

କଳା—ଏ ପାକ କହି ହୁଅନ୍ତେଁ ବାବା ! ତୁମ୍ଭପରି ଜଣେ ଅଧିକାରୀ ଗୋବନ୍ଦ ଜଉଙ୍କ କୁଞ୍ଜରେ ଅଛନ୍ତି । ତାହାଙ୍କଠାରେ ସ୍ତ୍ରୀଜଣେ ମାତା ମଧ୍ୟ ଅଛନ୍ତି । ମୁଁ ସେ ମନ୍ଦିରକୁ ଦର୍ଶନ କରିବାକୁ ଯାଇଥିଲି । ତହିଁରୁ ଜଣେ ମାତା ଆସି ମୋତେ ସେଠାରେ ରହିବାକୁ ଅନୁରୋଧ କଲେ । ତାହାଙ୍କ କଥାରେ ମୁଁ ବିଶ୍ୱାସ କରି ସେଠାରେ ରହିଲି । କେତେଦିନ ଉତ୍ତାରେ ସେ ମାତା ମୋତେ କହିଲେ—"ଆପଣ ଅଧିକାରୀଙ୍କଠାରୁ ଗୋପାଳ ମନ୍ତ୍ର ଗ୍ରହଣ କରିବା ହେଉନ୍ତୁ ।" ଅଧିକାରୀ ମନ୍ତ୍ରୋପଦେଶ ଦେବାର ତେଣିକି ଆଉ କାମୁକପରି ଆଚରଣ କରିବାକୁ ଆରମ୍ଭ କଲେ । ଆଜି ଏହି ବୃନ୍ଦାବନରୁ ବାହାରିଯିବି ।

ଇତ୍ୟବସରରେ ଇନ୍ଦୁମତୀ ଯମୁନାରୁ ସ୍ନାନକରି ଆସୁଅଛନ୍ତି, ହଠାତ୍ କଳାବତୀ ସମ୍ମୁଖରେ ପଡିବାରୁ ବହୁ ବିଳାପ କରି ପଚାରିଲେ ।

ଇନ୍ଦୁ—କଳାବତି ! ମୋତେ ପରିତ୍ୟାଗ କରି ଏକାକିନୀ ଏତେ-କାଳ କେଉଁଠାରେ ବାସ କରିଥିଲ ? ଏତେ ଦୁର୍ଦ୍ଦଶା ଭାବ କାହିଁକି ? କି ଦୋଷ କରିଅଛୁ ? ଯାହାହେଉ ଏବେ ଆପଣ କାହିଁକି ଦୁଃଖରେ ଅଭିଭୂତା ହୋଇଅଛନ୍ତି ।

କଳା—ସଖି ! ଏହି ଅଧିକାରୀମାନଙ୍କ ଗୁଣ କି କହିବି ! କହିବାକୁ ଲାଜ ଲାଗୁଛି ।

ଇନ୍ଦୁ—କହିବା ହେଉନ୍ତୁ । କାହିଁକି ଲାଜ ?

କଳା—ଦିନେ ମୁଁ ଗୋବନ୍ଦ ଜଉଙ୍କ କୁଞ୍ଜକୁ ଯାଇଥିଲି । ସେଠା ଅଧିକାରୀ ଗୋବନ୍ଦ ଦାସ ମଠରେ ରହିବାକୁ ମୋତେ ଅନୁରୋଧ କଲେ । ତାହାଙ୍କ ଅନୁରୋଧରେ ମୁଁ ରହିଲି । କେତେକ ଦିନ ପରେ ଅଧିକ କାମଶରରେ ପ୍ରପୀଡ଼ିତ ହୋଇ ମୋତେ ଆକ୍ରମଣ କରିବାକୁ ଲାଗିଲେ । ଏହିପରି ଅଧିକାରୀମାନଙ୍କ ଲକ୍ଷଣ ।

ଇନ୍ଦୁ—ସଖି କଳାବନ୍ତି ! ସେ ଅଧିକାରୀମାନଙ୍କଠାରେ ମାତାଜୀ-ମାନେ ଅଛନ୍ତି କି ?

କଳା—ଗ୍ୟାରଜଣ ମାତାଜୀ ଅଛନ୍ତି । ସେମାନେ ବ୍ୟଭିଚାରିଣୀ ପରି ବୋଧ ହେଉଅଛି ।

ଇନ୍ଦୁ—କଳାବନ୍ତି ! ଆପଣଙ୍କୁ ଅନ୍ୱେଷଣ କରି କରି ଏହି ମଠାଧିକାରୀଙ୍କ ମନ୍ଦିରରେ ଅବସ୍ଥାନ କରିଅଛି । ଏଠାରେ ମଧ୍ୟ ଦୁଇଜଣ ମାତାଜୀ ଅଛନ୍ତି । ମୋତେ ମଧ୍ୟ ଆପଣଙ୍କ ପରି ଘଟିଥାନ୍ତା । ମାତ୍ର ଦୈବବଶତଃ ମୁଁ ଅସ୍ପର୍ଶା ହେବାରୁ ଭଗବାନ ମୋତେ ରକ୍ଷାକଲେ ସବୀ ! ଏହି ପାପାତ୍ମା ଅଧିକାରୀମାନଙ୍କ ମନ୍ଦିରରେ ଥିବାଠାରୁ ପ୍ରାଣତ୍ୟାଗ କଲେ ଭଲ । ଏ ପୁଣ୍ୟ-ତୁଳସୀ କ୍ଷେତ୍ରରେ କାଳସର୍ପ ଅଧିକାରୀମାନେ ବାସ କରିଅଛନ୍ତି । କଳାବନ୍ତି ! ଏହି ବ୍ରଜବାସୀମାନଙ୍କ ମହାତ୍ମ୍ୟ ବୁଝିଲ ? ଚାଲ ଶୀଘ୍ର ଅନ୍ୟ ଦେଶକୁ ଗମନ କରିବା ।



# ଷଷ୍ଠ ପରିଚ୍ଛେଦ

## କୁମ୍ଭମେଳା

ଇନ୍ଦୁମତି, କଳାବତୀ ଦୁହେଁ ଦ୍ୱାଦଶ ବନ ପରିଭ୍ରମଣ କରି ଗମ୍ଭୀର ବନରେ ସାଧୁମାନଙ୍କୁ ଦର୍ଶନ କରି ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରିବା ଲାଗି ଓଡ଼ିଶା ପ୍ରତି ଗମନ କରିବାକୁ ସ୍ଥିର କରିଅଛନ୍ତି । ଏମନ୍ତ ସମୟରେ ନାନା ସ୍ଥାନରୁ ବୈଷ୍ଣବ ବୈରାଗୀ ସନ୍ନ୍ୟାସୀ ଦଣ୍ଡୀ, ବ୍ରହ୍ମଚାରୀ, ପରମହଂସ ଓ ଉଦାସୀନମାନେ ହରିଦ୍ୱାରକୁ ଯାଉଥିବା ବାର୍ତ୍ତା କଳାବତୀ ଶ୍ରବଣ କରି ସେଠାକୁ ଯିବାକୁ ମନ ବଳାଇଲେ । ପଥରେ ଯାଉଁ ଯାଉଁ କଳାବତୀ ଯୋଗୀନ୍ଦ୍ରଲାଲ ପରମହଂସଙ୍କୁ ପଚାରିଲେ ।

କଳା--ଆପଣମାନେ କେଉଁଠାକୁ ଯାଉଅଛନ୍ତି ?

ପରମହଂସ—ହରିଦ୍ୱାରରେ କୁମ୍ଭମେଳା ହେବ । ସେଠାକୁ ଅମ୍ଭେମାନେ ଯାଉଅଛୁଁ ।

କଳା—ହେ ପରମହଂସ ! ଏ କୁମ୍ଭମେଳାରେ କଅଣ ହୁଏ ?

ପରମ—ବାର ବର୍ଷରେ ଏଠାରେ ଗୋଟିଏ ମହାଯୋଗ ପଡ଼େ । ଏହି ଯୋଗରେ ଏଠାକୁ ସକଳ ମତାବଲମ୍ବୀମାନେ ଆପଣା ଆପଣା ମତର ଭେକ ଦେଖାଇବାକୁ ଆସନ୍ତି; କେତେ ସାଧୁମାନଙ୍କୁ ଦର୍ଶନ କରିବାକୁ ଆସନ୍ତି ଏବଂ ଆଉ କେତେ ଏହି ଯୋଗରେ ହରିଦ୍ୱାରଠାରେ ଜାହ୍ନବୀରେ ସ୍ନାନ କଲେ ପରମପଦ ଉପଲବ୍ଧ ହୁଏ ବୋଲି ଆସନ୍ତି । ଏହାର ନାମ କୁମ୍ଭମେଳା । ତୁମ୍ଭେ ଦୁହେଁ କେଉଁଠାକୁ ଯିବ ?

କଳା – ଆମ୍ଭେମାନେ କୁମ୍ଭମେଳା ଦର୍ଶନ କରି ଓଡ଼ିଶା ଗମନ କରିବୁ । ଆଜ୍ଞା ହେଲେ କୁମ୍ଭମେଳା ପର୍ଯ୍ୟନ୍ତ ଆପଣଙ୍କ ପଛେ ପଛେ ଆସିବୁଁ ।

ପରମ—ତୁମ୍ଭମାନେ ଆମ୍ଭ ସଙ୍ଗେ ଆସନାହିଁ । ତୁମ୍ଭମାନେ ଜାତରେ ସ୍ତ୍ରୀ ଏବଂ ଗୃହସ୍ଥାଶ୍ରମ ମଧ୍ୟ ନେଇନାହିଁ । ଅତଏବ ଭିନ୍ନମାର୍ଗ ଅବଲମ୍ବନ କରି ସେଠାକୁ ଯାଅ ।

କଳା—ହେ ସାଧୁ ! ଆପଣ ଆମ୍ଭର ପିତୃସଦୃଶ; ଆମ୍ଭେମାନେ ତୁମ୍ଭ ଅନୁଗମନ କଲେ କି ହେଲା ?

ପରମ—ନାହିଁ ମାତା ! ସେପରି ଆପଣମାନେ ଆସନ୍ତୁ ନାହିଁ । ଆମ୍ଭେ ସାଂସାରିକ ସୁଖରେ ଜଳାଞ୍ଜଳି ପ୍ରଦାନ କରି ପୁଣ୍ୟାଶ୍ରମ ଭ୍ରମଣ କରୁଅଛୁଁ । ଏହି ଆମ୍ଭର ଦୃଢ଼ ବ୍ରତ । ଆମ୍ଭ ପ୍ରାର୍ଥନାରେ ଆପଣମାନେ ଶୀଘ୍ର ଅନ୍ତର ହୁଅନ୍ତୁ ।

କଳା—(ବିନୀତଭାବେ) ହେ ସାଧୁ ! ଆପଣ ଯଦି ଦୃଢ଼ ମନସ୍କ ହୋଇଅଛନ୍ତି, ତେବେ ଆମ୍ଭେମାନେ ସଙ୍ଗରେ ଥିଲେ ଆପଣଙ୍କର କାହିଁକାହିଁ ବ୍ରତ ଭଙ୍ଗ ହେବନାହିଁ ।

ପରମହଂସ ଏହା ଶୁଣିବା ମାତ୍ରକେ ପ୍ରସଙ୍ଗବଶତଃ "ଶ୍ରେଷ୍ଠୀ ଓ ଜରତୀ ବେଶ୍ୟାଙ୍କ" ଚରିତ କହିଲେ । ପରେ "ଘୃତକୁମ୍ଭସମା ନାରୀ, ତପ୍ତାଙ୍ଗାର ସମଃ ପୁମାନ୍" ଏହି ନୀତି ବାକ୍ୟ କହି ଶୀଘ୍ର ଆପଣମାନେ ଅନ୍ତର ହୁଅନ୍ତୁ ବୋଲି ବାରମ୍ବାର ପ୍ରାର୍ଥନା କଲେ । କଳାବତୀ ପରମହଂସଙ୍କଠାରୁ ବିଦାୟ ହୋଇ ଭିନ୍ନମାର୍ଗ ଅବଲମ୍ବନ କଲେ । ପଥରେ ଯାଉଁ ଯାଉଁ ଇନ୍ଦୁମତୀଙ୍କୁ କହିଲେ ।

କଳା—ସଖି ! ଏ ପରମହଂସ କିପରି ସାଧୁ ! ଏପରି ସାଧୁମାନେ ମାତ୍ର ପୁଣ୍ୟାଶ୍ରମମାନଙ୍କରେ ଥିବା ଯୋଗ୍ୟ ।

ତଦାଦ ଦୁହେଁ ହରିଦ୍ୱାରରେ ପ୍ରବେଶ ହେଲେ । ସେଠାରେ ଶ୍ରୀ, ସନକ, ବ୍ରହ୍ମ, ରୁଦ୍ର ଚାରି ସମ୍ପ୍ରଦାୟ—ବୈଷ୍ଣବ, ଯୋଗୀ, ସନ୍ନ୍ୟାସୀ, ମୁନି, ତପସ୍ୱୀ ଓ ଦଣ୍ଡୀମାନେ ସମବେତ ହୋଇଅଛନ୍ତି । ସେମାନଙ୍କ ମଧ୍ୟରେ କେତେ ଜଟାଜୂଟଧାରଣ କରିଅଛନ୍ତି; କେତେ ଦିଗମ୍ବରର, କେତେ

ଦଣ୍ଡ କମଣ୍ଡଳୁ ଧରି କାଷାୟ ବସନ ପରିଧାନ କରିଅଛନ୍ତି, ଏବଂ କେତେ ମୌନ-ବ୍ରତୀ । ଯେତେବେଳେ ସ୍ନାନଯୋଗ ଉପସ୍ଥିତ ହେଲା, ଆପଣା ଆପଣା ନିଶାଣି ଧରି ଭିନ୍ନ ଭିନ୍ନ ସମ୍ପ୍ରଦାୟମାନେ ଜାହ୍ନବୀରେ ସ୍ନାନ କରିବାକୁ ବାହାରିବା ସମୟରେ ସେମାନଙ୍କ ମଧ୍ୟରେ ବିଶେଷ ଗୋଳମାଳ ଉଠିଲା । ବୁଝିଲେ ଯେ ସେମାନେ ନିଜ ନିଜ ଆଧିକ୍ୟ ଦେଖାଇବାଲାଗି ବିବାଦ କରୁଅଛନ୍ତି । ତତ୍ପରେ କଳାବତୀ ସନାତନୀ ସହ ପୁଣ୍ୟ ତୀର୍ଥରେ ସ୍ନାନକରି ସାଧୁମାନଙ୍କୁ ଦର୍ଶନକରିବାର ସେଠାରୁ ବାହାରିଲେ । ତିନିଦିନ ପରେ କଲିକତାଠାରେ ଜାହାଜରେ ବସି ଯାଉଥିବା ସମୟରେ ଦେଖିଲେ ଯେ ଜାହାଜରେ ନାନା ଜାତିର ଲୋକେ ଯାଉଥିଲେ । ସେମାନଙ୍କ ମଧ୍ୟରେ ଅମ୍ବିକାଚରଣ ଚୌଧୁରୀ ଏବଂ ତାହାଙ୍କର ସହଧର୍ମିଣୀ ଚନ୍ଦ୍ରକଳା ମଧ୍ୟ ଥିଲେ । ଚନ୍ଦ୍ରକଳା କଳାବତୀଙ୍କ ଅପୂର୍ବ ଲାବଣ୍ୟ ମୂର୍ତ୍ତି ଦେଖି ପଚାରିଲେ ।

ଚନ୍ଦ୍ରକଳା—ତୁମ୍ଭେ କେଉଁଠାରୁ ଆସୁଅଛ ? ଏଣେ କେଉଁଠାକୁ ଯିବ ? ଏବଂ ତୁମ୍ଭର ନାମ କଅଣ ?

କଳା—ଆପଣଙ୍କ ନାମ ପ୍ରଥମେ କହିବା ହେଉନ୍ତୁ ।

ଚନ୍ଦ୍ର—ମୋର ନାମ ଚନ୍ଦ୍ରକଳା ।

କଳା—ସଖି ଚନ୍ଦ୍ରକଳା ! ମୋର ନାମ ଶୁଣିବାକୁ ଇଚ୍ଛା କରିଅଛ ? ମୋର ଚନ୍ଦ୍ର ନାହିଁ । ଏଣୁ କଳାରେ ବତୀ ଲଗାଇ ପୁଣ୍ୟାଶ୍ରମମାନ ଭ୍ରମଣ କରୁଅଛି ।

ଏହି ସାଙ୍କେତିକ ଶ୍ରବଣ କରି ଚନ୍ଦ୍ରକଳା ଚକିତ ହେଲେ ମାତ୍ର ତାହାର ମର୍ମ ବୁଝିପାରିଲେ ନାହିଁ । ଅମ୍ବିକାଚରଣ ନିଜ ପତ୍ନୀଙ୍କୁ ଡାକି କହିଲେ । ପ୍ରିୟେ ! ତୁମ୍ଭ ସଖୀଙ୍କ ନାମ କଳାବତୀ; ସେ ବିଦ୍ୟାବତୀ ପରି ପ୍ରତୀତ ହେଉଅଛନ୍ତି । ଏହାଙ୍କ ସହିତ ବିଶେଷ କଥୋପକଥନ କରନାହିଁ । ତୁମ୍ଭ ଅଜ୍ଞତା ପ୍ରକାଶ ହେବ । ମୁଁ ତାହାଙ୍କ ପାଶକୁ ଯାଉଅଛି ।

ଅମ୍ବିକାଚରଣ କଳାବତୀଙ୍କ ନିକଟକୁ ଯାଇ କହିଲେ ।

ଅମ୍ବିକା—ଆପଣମାନେ କଷ୍ଟକରି ଆମ୍ଭର ଅତିଥି ହେଉନ୍ତୁ ।

କଳାବତୀ ତାହାଙ୍କ ପ୍ରାର୍ଥନାରେ ସମ୍ମତି ପ୍ରଦାନ କରି ପଚ୍ଛରିଲେ ଏଠାରେ କଅଣ ଖାଇବାକୁ ହେବ ?

ଅମ୍ବିକା—ଯାହା ଖାଇବାଯୋଗ୍ୟ ତାହା ଖାଇବାକୁ ହେବ ।

ଯେତେବେଳେ ଭୋଜନ ସ୍ଥାନରେ ଉପସ୍ଥିତ ହେଲେ ଦେଖିଲେ ଯେ ଅନ୍ନ, ବ୍ୟଞ୍ଜନ ପ୍ରଭୃତି ରଖାଅଛି । କଳାବତୀ ଏହି ପଦାର୍ଥମାନ ଭୋଜନ କରିବାକୁ କୁଣ୍ଠିତ ହୋଇ ପଚ୍ଛରିଲେ ।

କଳାବତୀ—ଭିନ୍ନ ଜାତୀୟ ଲୋକେ ଏଠାରେ ସମବେତ ହୋଇଅଛନ୍ତି । ହିନ୍ଦୁ ହୋଇ କପରି ଅନ୍ନ ଭୋଜନ କରିବାକୁ ହେବ ?

ଅମ୍ବିକା—"ନୌକାୟାଂ ଗଜପୃଷ୍ଠକେ ।" ଏହି ବିଧି ଅନୁସାରେ ଆମ୍ଭମାନଙ୍କୁ ଭୋଜନ କରିବାକୁ ହେବ । ଦେଖ କଳାବତି ! ସୂର୍ଯ୍ୟ-ବଂଶୀୟ ରଘୁ ମହାରାଜ ଯେତେବେଳେ ଦିଗ୍‌ବିଜୟ କରିବାକୁ ବାହାରିଲେ ତେତେବେଳେ ତାହାଙ୍କୁ ନାନାଦେଶ ଭ୍ରମଣ କରିବାକୁ ପଡ଼ିଲା । ତାହାଙ୍କୁ କେତେବେଳେ ଯାନବାହାନାଦିରେ, କେତେବେଳେ ନୌକା ପ୍ରଭୃତି ଜଳଯାନମାନଙ୍କରେ ଗମନ କରିବାକୁ ହେଉଥିଲା । ଯାହା ସମୟରେ ନୌକାରେ ଭୋଜନ କରିବାକୁ ଦୋଷମଣୁ ନଥିଲେ । ସୁନ୍ଦରି ! ତୁମ୍ଭେ ଏପରି ଦୋଷ ମଣିବାକୁ ହେଲେ ଭାରତ ବିନା ଅନ୍ୟ ଦେଶମାନ ଭ୍ରମଣ କରିପାରିବ ନାହିଁ । ଦେଖ ସୁନ୍ଦରି ! ହିନ୍ଦୁ ମତାବଲମ୍ବୀ ସୁବିଦ୍ୱାନ୍ ଭାରତ ପୁତ୍ରମାନେ ପୃଥିବୀର ନାନା ସ୍ଥାନ ପର୍ଯ୍ୟଟନ କରି ସଭ୍ୟତାର ଉଚ୍ଚତମ ସୋପାନରେ ଅଧିରୋହଣ କରିଅଛନ୍ତି । ଅତଏବ ନିଃସଂଶୟରେ ଭୋଜନ କରିବା ହେଉନ୍ତୁ ।

କଳାବତୀ ଅମ୍ବିକାଚରଣଙ୍କ ଯୁକ୍ତିସଙ୍ଗତ ବାକ୍ୟରେ ସାତିଶୟ ସନ୍ତୁଷ୍ଟା ହୋଇ ଭୋଜନ କରିବାକୁ ମନ ବଳାଇଲେ । ଭୋଜନ ସମୟରେ ଅମ୍ବିକାଚରଣ କଳାବତୀଙ୍କ ସହିତ କଥୋପକଥନ କରିବାକୁ ଆରମ୍ଭ କଲେ । କଳାବତୀଙ୍କ ସୁମଧୁର ବାକ୍ୟ ଶୁଣି ଅମ୍ବିକାଚରଣ ମନେ ମନେ

ବସ୍ତୁର କଲେ । ହା ! ଏହି ସୁନ୍ଦରୀର ମୁଖନିର୍ଗତ ବାକ୍ୟଗୁଡ଼ିକ କି ଅନିର୍ବଚନୀୟ ଶୋଭା ଧାରଣ କରିଅଛି ! ଏହି ଗୁଣଶାଳିନୀଙ୍କ ଯୁକ୍ତିସଙ୍ଗତ ସୁମଧୁର ବାକ୍ୟମାନ ଯେତେବେଳେ କଟକବାସୀମାନଙ୍କ କର୍ଣ୍ଣପଥରେ ପଡ଼ିବ କି ପଣ୍ଡିତ, କି ମୂର୍ଖ କି ସଭ୍ୟ, କି ଅସଭ୍ୟ ସମସ୍ତେ ଆନନ୍ଦ ସାଗରରେ ଭାସମାନ ହେବେ ।

ଗଙ୍ଗାସାଗର ସଙ୍ଗମର ଅନିର୍ବଚନୀୟ ଶୋଭା, କପିଳାଶ୍ରମ, ବ୍ରାହ୍ମଣୀ ଓ ବୈତରଣୀର ସଙ୍ଗମ ସ୍ଥାନ, ସ୍ଥାନେ ସ୍ଥାନେ ଜଳହସ୍ତୀମାନଙ୍କର ଶୋଭା ଏବଂ ମହାନଦୀସ୍ଥିତ ମଗରମାନଙ୍କର କ୍ରୀଡ଼ା ଅବଲୋକନ କରି କଳାବତୀ ଆନନ୍ଦିତା ହୋଇ ମିତ୍ରମାନଙ୍କ ସହ ଜାହାଜର ଚତୁର୍ଦ୍ଦିଗରେ ଭ୍ରମଣ କରୁଥାନ୍ତି । ସେହି ସମୟରେ ଓଡ଼ିଶା କମିଶନର ସାହେବଙ୍କ ସହିତ କଳାବତୀଙ୍କର ସାକ୍ଷାତ ହୋଇଥିଲା । ସାହେବ କଳାବତୀଙ୍କ ବାକ୍ୟରେ ପ୍ରୀତ ହୋଇ କଟକରେ କେତେକ ଦିନ ତାହାଙ୍କୁ ରହିବାକୁ ପ୍ରାର୍ଥନା କରିଥିଲେ । ତାହାଙ୍କ ପ୍ରାର୍ଥନାରେ କଳାବତୀ ସମ୍ମତି ପ୍ରଦାନ କରିବାରୁ ଅମ୍ବିକାଚରଣଙ୍କ ଆନନ୍ଦ ସାଗର ଉଦ୍‌ବେଳିତ ହେଉଥିଲା । ଏହିପରି କୌତୁକରେ କଳାବତୀ କାଳଯାପନ କରୁଥିଲାବେଳେ ଜୋବରା ଘାଟରେ ଜାହାଜ ଉପସ୍ଥିତ ହେଲା । କମିଶନର ସାହେବଙ୍କୁ ସମ୍ମାନ କରିବା ନିମନ୍ତେ ହରପ୍ରସାଦ ରିଙ୍ଗୁଆ, ମଦନମୋହନ ଦାସ, ସାଧୁଚରଣ ନାୟକ ପ୍ରଭୃତି ଭଦ୍ରସନ୍ତାନମାନେ ଅପେକ୍ଷା କରିଅଛନ୍ତି । ଇତ୍ୟବସରରେ କଳାବତୀ ସହିତ ସାହେବ, ଅମ୍ବିକାଚରଣ, ଚନ୍ଦ୍ରକଳା ଓ ଇନ୍ଦ୍ରମତୀ ଜାହାଜରୁ ଉତ୍ତୀର୍ଣ୍ଣ ହେଲେ । ସାହେବ ଏବଂ କଳାବତୀ ଅତି ଚମତ୍କାରରେ କଥୋପକଥନ କରୁଅଛନ୍ତି । ତାହା ଦେଖି ସମସ୍ତେ ଚମତ୍କୃତ ହେଲେ; ଏବଂ ଏହି ଅମୂଲ୍ୟ ସୁନ୍ଦରୀକୁ ସାହେବ କିପରି ଲଭିଲେ ତାହାର ଉଦନ୍ତ ବୁଝିବାକୁ ସମସ୍ତଙ୍କ ମନ ଉଦବେଗ ହେଲା । ସାହେବ, କଳାବତୀ ଓ ଇନ୍ଦ୍ରମତୀ ଗୋଟିଏ ଗାଡ଼ିରେ ବସି ଲାଲବାଗ୍ ପ୍ରତି ଗମନ କଲେ । ସାଧୁଚରଣ ନାୟକ ଅମ୍ବିକାଚରଣଙ୍କୁ ପ୍ରସଙ୍ଗବଶତଃ ପଚାରିଲେ ।

ସାଧୁ—ସାହେବଙ୍କ ସହିତ ଯେଉଁ ଦୁଇଗୋଟି ହିନ୍ଦୁମହିଳା ବସିଅଛନ୍ତି ସେମାନଙ୍କ ବିଷୟରେ ଆପଣ କିଛି ଜାଣିଅଛନ୍ତି ?

ଅମ୍ବିକା—ସାମ୍ଭୁ! ଏ ଦୁହେଁ ଦେଶ ଭ୍ରମଣ କରିବାକୁ ବାହାରି ଅଛନ୍ତି, ସେ ସାହେବଙ୍କ ଦକ୍ଷିଣ ପାର୍ଶ୍ୱରେ ବସିଅଛନ୍ତି । ସେ ସକଳ ଗୁଣରେ ପରିପୂର୍ଣ୍ଣା ଅଟନ୍ତି, ତାହାଙ୍କର ବଚନ ଏପରି ମଧୁର ଯେ ସେ ଅବଲୀଳାରେ ଜଗତ ବଶ କରିପାରିବେ । ଏହାଙ୍କୁ ସରସ୍ୱତୀ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ; ଏବଂ ଯେ ବାମ ପାର୍ଶ୍ୱରେ ବସିଅଛନ୍ତି ସେ ଏହି ପରମସୁନ୍ଦରୀଙ୍କ ସହଚରୀ ଅଟନ୍ତି । ଏ ଦୁହେଁ ଆମ୍ଭର ଅତିଥି ହୋଇ କେତେକାଳ କଟକରେ ଅବସ୍ଥାନ କରିବାକୁ ଅଙ୍ଗୀକାର କରି-ଅଛନ୍ତି । ହଠାତ୍ ସାହେବ ପରିଚୟ ଦେବାରୁ ସ୍ନେହବଶତଃ ତାହାଙ୍କ ସହିତ ଗମନ କରୁଅଛନ୍ତି । ସାମ୍ଭୁଚରଣ ପ୍ରଭୃତି ଭଦ୍ରବ୍ୟକ୍ତିମାନଙ୍କର ଶଙ୍କା ଦୂରୀଭୂତ ହେଲା । କମିଶନର ସାହେବ କଳାବଣ୍ଟଙ୍କୁ ଅମ୍ବିକା-ଚରଣଙ୍କ ଗୃହରେ ଛାଡ଼ିଦେଇ ଫେରି ଲାଲବାଗକୁ ପ୍ରସ୍ଥାନ କଲେ ।



# ସପ୍ତମ ପରିଚ୍ଛେଦ

## ଇନ୍ଦ୍ରଧନୁ ଓ ବିଜୁଳୀର ତିରୋଭାବ

ଏଣେ କଳାବତୀ ସାୟଂକାଳ ସମୟରେ ସାୟଂ ସମୀରଣ ସେବନାର୍ଥେ କାଠଯୋଡ଼ି ଆଡ଼େ ଭ୍ରମଣ କରିବାକୁ ଯାଇ ପ୍ରତ୍ୟାବର୍ତ୍ତନ ସମୟରେ ଦେଖିଲେ ଯେ ବାବୁ ମାଧବଦାସ, ଉମାଶଙ୍କର ରାୟ, ଖିମଶଙ୍କର ରାୟ, ଆନନ୍ଦକିଶୋର ଦାସ, ଶିବମୋହନ ସେନାପତି, ଶ୍ରୀନାଥରାୟ ପ୍ରଭୃତି ଉତ୍କଳ ଭଦ୍ରସନ୍ତାନମାନେ ଅମ୍ବିକାଚରଣ ସହିତ କଥୋପକଥନ କରୁଅଛନ୍ତି । ଏମନ୍ତ ସମୟରେ କଳାବତୀଙ୍କୁ ଦେଖି ସମସ୍ତେ ଦଣ୍ଡାୟମାନ ହେଲେ । କଳାବତୀ ସେମାନଙ୍କ ବିନୟ ଭାବରେ ମୁଗ୍ଧ ହୋଇ କହିଲେ ।

କଳାବତୀ—ଆପଣମାନେ କିଞ୍ଚିତ୍ କାଳ ଅପେକ୍ଷା କରନ୍ତୁ ।

ତତ୍ପରେ ଶୀଘ୍ର ଗୃହାଭ୍ୟନ୍ତରକୁ ଯାଇ ନିର୍ମଳୋଦକରେ ମାର୍ଜିତ ହୋଇ ପରିଶୁଭ୍ର ବସ୍ତ୍ର ପରିଧାନପୂର୍ବକ ସେମାନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ ।

କଳା—ହେ ଗୁଣିଗଣସମ୍ମାନିତ ଉତ୍କଳ ସଭ୍ୟବୃନ୍ଦ ! ଆପଣମାନଙ୍କ ଠାରେ ମୁଁ ଗଳବଦ୍ଧ ଅମାନ୍ୟ କରିଅଛି । ଆପଣମାନଙ୍କ ପରି ଭଦ୍ରବ୍ୟକ୍ତିମାନେ ମୋତେ ଦେଖିବାକୁ ଅପେକ୍ଷା କରୁଥିବାବେଳେ କିଞ୍ଚିତ୍ ଅପେକ୍ଷା କରନ୍ତୁ ଏପରି କହି ଗୃହାଭ୍ୟନ୍ତରକୁ ଯାଇ ବ୍ୟର୍ଥରେ ଆପଣମାନଙ୍କ ଅମୂଲ୍ୟ ସମୟ ହରଣ କରିଅଛି କ୍ଷମା କରିବା ହେଉନ୍ତୁ ।

ଭଦ୍ର—ନା, ନା ଦେବି ! ସେପରି କହନ୍ତୁ ନାହିଁ । ଆପଣ କିଛି ଦେରି କରିନାହାନ୍ତି, ଅବଜ୍ଞା କରିବାକୁ ଗୃହାନ୍ତରକୁ ଯାଇନାହାନ୍ତି ମାତ୍ର କାର୍ଯ୍ୟବଶତଃ ଆପଣଙ୍କୁ ଗୃହାନ୍ତରକୁ ଯିବାକୁ ପଡ଼ିଲା । ଯଥାର୍ଥରେ କହିଲେ ଆପଣଙ୍କର ଆମ୍ଭେମାନେ କେତେ ପର୍ଯ୍ୟନ୍ତ ଅନିଷ୍ଟ•ଘଟାଇ ଅଛୁଁ ।

"ହେ ଗୁଣିଗଣ ଶିରୋମଣିନେ ! ଆମ୍ଭେମାନେ ଭାଗ୍ୟବଶତଃ ଆପଣଙ୍କ ଦର୍ଶନ ପ୍ରାପ୍ତ ହୋଇଅଛୁଁ । ଆମ୍ଭମାନଙ୍କ ପ୍ରାର୍ଥନାରେ ଆପଣ ଏଠାରେ କେତେକାଳ ରହି ଆମ୍ଭମାନଙ୍କୁ ଚରିତାର୍ଥ କରନ୍ତୁ" ଏହିପରି ମାଧବଦାସଙ୍କ ପ୍ରତ୍ୟୁତ୍ତର ଶ୍ରବଣ କରି ମାତ୍ରକେ କଳାବର୍ଣ୍ଣ ପାଣ୍ଡିତ୍ୟ ସନ୍ତୁଷ୍ଟ ହୋଇ ଆମୋଦପ୍ରମୋଦରେ ପ୍ରାୟ ଅଢ଼ାଇ ଘଣ୍ଟା ଯାପନ କରି ପରିଶେଷରେ ମୁକ୍ତକଣ୍ଠରେ କହିଲେ ।

କଳା—କେତେ କାଳ ମୁଁ ଆପଣମାନଙ୍କ ଅତିଥି ହୋଇ ରହିବ ?

ଭଦ୍ର—ଏ ଆପଣଙ୍କ ଗୃହ । ଆପଣ କାହାର ଅତିଥି ହେବେ ?

ଏହିପରି କହି ସମସ୍ତେ କଳାବର୍ଣ୍ଣଙ୍କଠାରୁ ବିଦାୟ ନେଲେବେଳେ, ଅମ୍ବିକାଚରଣଙ୍କ ଗୃହ ନିକଟରେ ଜଣେ କାୟସ୍ଥ ମହିଳା ବାସ କରିଥାଏ, ତାହାର ନାମ ସୂର୍ଯ୍ୟମଣି । ଆପଣା ଗୃହରେ ହଠାତ୍ ଅଗ୍ନି ଲଗିବା ଯୋଗୁଁ ସାହାଯ୍ୟ ନିମନ୍ତେ ଅତି କାତର ସ୍ୱରରେ ଡାକୁଥିଲି । ସେ ଅତି ଗରିବ ଥିବାରୁ କେହି ତାହାର ସାହାଯ୍ୟ କରିବାକୁ ଯାଉନଥିଲେ । ଏହି କାତର ବାକ୍ୟ କଳାବର୍ଣ୍ଣଙ୍କ ଶ୍ରୁତି ପଥରେ ପଡ଼ିବାରୁ ଶୀଘ୍ର ବାହାରକୁ ଆସି ଦେଖିଲେ ଯେ, ସନ୍ନିକଟ ଗୃହରେ ଅଗ୍ନି ଲଗି ଜଳୁଥିଲି, ଅଗ୍ନି ନିର୍ବାପଣ କରିବା ନିମନ୍ତେ ଅତିଶୀଘ୍ର ସେଠାରେ ପ୍ରବେଶ ହେଲେ । କଳାବର୍ଣ୍ଣଙ୍କର ଏପରି ପରୋପକାର ବୁଦ୍ଧି ଦେଖି ସେହି ବାବୁମାନେ ତାହାଙ୍କ ପଛେ ପଛେ ଗମନ କରି ଅଗ୍ନିନିର୍ବାପଣ କରିଦେଲେ । ପରେ ଆପଣା ଆପଣା ଗୃହକୁ ପ୍ରସ୍ଥାନ କଲେ । ଆରଦିନ ପ୍ରାତଃକାଳରେ ସୂର୍ଯ୍ୟମଣି କଳାବର୍ଣ୍ଣଙ୍କ ନିକଟକୁ ଯାଇ ନିଜ ଦୁଃଖ ପ୍ରକାଶ କରି ଗୃହ ସଂସ୍କରଣ କରିବା ନିମନ୍ତେ ସାହାଯ୍ୟ ପ୍ରାର୍ଥନା କରିବାରୁ ତତ୍‌କ୍ଷଣାତ୍ ପଞ୍ଚଦଶ ମୁଦ୍ରା ପ୍ରଦାନ କଲେ ।

ଏହି ସମୟରେ କଟକରେ ଜାତୀୟ ଅନ୍ଦୋଳନ ବିଶେଷତଃ ଲଗିଥିଲି । ପ୍ରତି ପାଠକଙ୍କ ହସ୍ତରେ ଇନ୍ଦ୍ରଧନୁ ଓ ବିଜୁଳୀ ଦେଖାଯାଉଥିଲି । ଜଣେ ଉଚ୍ଚ ଶ୍ରେଣୀ ଛାତ୍ରଙ୍କ ହସ୍ତରେ ଏ ଦୁଇ ପତ୍ରିକା ଦେଖି ପାଠକରିବା ନିମନ୍ତେ କଳାବର୍ଣ୍ଣ ତାହାଙ୍କୁ ଉକ୍ତ ପତ୍ରିକା ମାଗନ୍ତେ ଛାତ୍ର ଅତ୍ୟନ୍ତ ଭକ୍ତିପୂର୍ବକ ତାହାଙ୍କୁ ପ୍ରଦାନ କଲେ । କଳାବର୍ଣ୍ଣ ପତ୍ରିକାଦ୍ୱୟ ପାଠକରି ସମସ୍ତ ସମୟରେ ଦୁଃଖ ପ୍ରକାଶ କରୁଥାଆନ୍ତି । ଅବସର ପ୍ରାପ୍ତ ହେଲେ

ସର୍ବସାଧାରଣଙ୍କୁ ଆପଣାର ଅଭିମତ ଜଣାଇବାପାଇଁ ଇଚ୍ଛୁକ ହୋଇଥାଆନ୍ତି । ଏହେନ ଭଞ୍ଜୀୟ ଆନ୍ଦୋଳନଲାଗି ବାବୁ ଆନନ୍ଦକିଶୋର ଦାସଙ୍କ ଗୃହରେ କେତେ ଉତ୍କଳ ଭଦ୍ରବ୍ୟକ୍ତିମାନଙ୍କର ଗୋଟିଏ ଅଧିବେଶନ ହୋଇଥିଲା । କଳାବଣ୍ଣ ଅମ୍ବିକାଚରଣଙ୍କ ସହିତ ହଠାତ୍ ସେଠାରେ ପ୍ରବେଶ ହେଲେ । ଏହି ଅଧିବେଶନରେ ଅଗ୍ରାସନ ଗ୍ରହଣ କରିବାକୁ କଳାବଣ୍ଣଙ୍କୁ ଅନୁରୋଧ କରନ୍ତେ ଅତ୍ୟନ୍ତ ଆନନ୍ଦସହ କଳାବଣ୍ଣ ଅଗ୍ରାସନ ଗ୍ରହଣ କରି କହିଲେ ।

କଳା—ଯେଉଁ ମହାତ୍ମାର ମହାକାବ୍ୟ, ଖଣ୍ଡକାବ୍ୟ, ଶତକାବ୍ୟ ଓ ଅଳଙ୍କାର ପ୍ରଭୃତି କବିତାମାନ ଉତ୍କଳ ଭାଷାରେ ରଚିତ ହୋଇ ଆଧୁନିକ ଉତ୍କଳ କବିମାନଙ୍କର ଆଦର୍ଶସ୍ଥାନୀୟ ହୋଇଅଛି, ଯାହାର କବିତାମାନ ସମସ୍ତ ଉତ୍କଳ ମଣ୍ଡଳରେ ପରିଭ୍ରମଣ କରି ଭାରତୀୟ ଉତ୍କଳ ସନ୍ତାନମାନଙ୍କ ମୁଖୋଜ୍ଜ୍ୱଳ କରୁଅଛି, ଯାହାକୁ ପୂର୍ବକାଳୀନ ଉତ୍କଳ କବିମାନଙ୍କରେ ମହାକବି ବୋଲି ହଣ୍ଟର ସାହେବ କହିଅଛନ୍ତି ଏବଂ ଉତ୍କଳବାସୀମାନେ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛନ୍ତି, ଯାହାର ଅଭାବରେ ଉତ୍କଳ ସନ୍ତାନମାନେ ବିଦ୍ୟାହୀନ ହୋଇ ଶୁଷ୍କକାଷ୍ଠ ପରି ଦୁଃଖ ସରିତରେ ଭାସମାନ ହୋଇ ଥାଆନ୍ତେ, ଯାହାର ଅଭାବରେ ଉତ୍କଳ-ଗୌରବ-ରବି ଉଦୟ ହେବାର ସମ୍ଭାବନା ନଥାନ୍ତା, ଏବଂ ଯାହାଙ୍କୁ ଉତ୍କଳ କବିମାନଙ୍କରେ କାଳିଦାସ କିମ୍ବା ସେକସ୍‌ପିଅର କହିଲେ ଅତ୍ୟୁକ୍ତି ହେବନାହିଁ, ସେହି ଉତ୍କଳ-କବି-ତିଳକ ଶ୍ରୀ ଉପେନ୍ଦ୍ର ଭଞ୍ଜଙ୍କ ବିଶୁଦ୍ଧ କବିତାରେ କଳଙ୍କ-କାଳିମା ଲେପନ କରିବାକୁ ଯେଉଁମାନେ ସାହସୀ ହୋଇଅଛନ୍ତି, ଆମ୍ଭ ଜାଣିବାରେ ସେମାନେ କୃପାଯୋଗ୍ୟ । ଶ୍ରୋତୃବର୍ଗ ! ଦେଖ, ଯେଉଁ ମହାସମୁଦ୍ରର ଭିନ୍ନ ଭିନ୍ନ ସ୍ଥାନରେ ରତ୍ନ, ମୁକ୍ତା, ମତ୍ସ୍ୟ ଓ ନାନା ଜାତୀୟ ଜଳଜନ୍ତୁ ଶଙ୍ଖ, ଶମ୍ବୁକ ପ୍ରଭୃତି ସମସ୍ତ ପଦାର୍ଥମାନ ଇତସ୍ତତଃ ପଡ଼ି ରହିଅଛନ୍ତି, ଏବଂ ସେହି ପଦାର୍ଥମାନଙ୍କୁ ମନୁଷ୍ୟ, ପଶୁ, ପତଙ୍ଗ ସମସ୍ତେ ଆପଣା ଆପଣା ଉପଯୋଗ କ୍ରମେ ଅନୁଭବ କରିବାରେ ତ୍ରୁଟି କରନ୍ତି ନାହିଁ, ସେହି ମହାସମୁଦ୍ରରେ ସ୍ୱଭାବତଃ କାକ ମଳ ଉତ୍ସର୍ଗ କରେ; ତଦ୍ଦ୍ୱାରା ସମୁଦ୍ର କଳଙ୍କିତ ହୁଏନାହିଁ ମାତ୍ର କାକର ଏପରି କୁଚେଷ୍ଟା ଦେଖି ଯେଉଁମାନେ ଯାତନା ଦେବାକୁ ବସିଅଛନ୍ତି ସେମାନେ କେବଳ ଆପେ କଳଙ୍କିତ ହୋଇ ମହାସମୁଦ୍ରରେ କଳଙ୍କ-କାଳିମା ଲେପନ କରନ୍ତି । ସେହିପରି ଏ ଭଞ୍ଜୀୟ କାବ୍ୟ ମାନେ

ସମସ୍ତ ରସରେ ପୂରିତ ଏବଂ ସମସ୍ତଙ୍କଦ୍ୱାରା ଆନନ୍ଦର ସହିତ ଗୃହୀତ । ଏ ସର୍ବାଙ୍ଗୀ ସମାଲୋଚନାର ସ୍ଥାନ ନୁହେଁ । ଯେଉଁମାନେ ସମାଲୋଚନା କରିବାକୁ ବସିଅଛନ୍ତି ସମାଲୋଚନା କରନ୍ତୁ କ୍ଷେତ୍ରରେ ମହାକାବ୍ୟର କଣ୍ଟ ଲାଘବ ହୁଏ ନାହିଁ । ମାତ୍ର ସମାଲୋଚକମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ଲାଗି ଯେଉଁମାନେ ଅଗ୍ରସର ହୁଅନ୍ତି ସେମାନେ ଆପେ ନନ୍ଦିତ ହୋଇ ମହାକାବ୍ୟରେ କଳଙ୍କ-କାଳିମା ଲେପନ କରନ୍ତି, ତତଦ୍‌ତବେଳେ ଅପରଦର୍ଶୀ ସ୍ଥଳକମାନଙ୍କଠାରୁ ଉପଯୁକ୍ତ ପ୍ରତ୍ୟୁତ୍ତର ଯାତନା ପାଇ ମଧ୍ୟ ପରେ ଧନ୍ୟବାଦର ପାତ୍ର ହୁଅନ୍ତି । ଅତଏବ ପ୍ରାର୍ଥନା ଏହି ଯେ, ବନ୍ଧୁମାନେ ଏଥିରେ ହସ୍ତକ୍ଷେପ ନକରି ନୀରବ ହୁଅନ୍ତୁ ।

କଳାବତୀଙ୍କ ବାକ୍ୟରେ ସମସ୍ତେ ପ୍ରମୋଦିତ ହେଲେ । ତଦବଧି ବିଜୁଳୀ ଓ ଇନ୍ଦ୍ରଧନୁ ଉତ୍କଳ ସାହିତ୍ୟାକାଶରେ ଦେଖିବାକୁ ମିଳେ । ପରିଶେଷରେ କଳାବତୀ ଭଦ୍ରମଣ୍ଡଳୀର ପ୍ରଶଂସିତା ହୋଇ ଆବାସ ପ୍ରତି ପ୍ରସ୍ଥାନ କଲେ । ପରଦିନ ପ୍ରାତଃ କାଳରେ କଳାବତୀ ରେଭେନ୍‌ସା କଲେଜକୁ ଯାଇ ବିଦ୍ୟାଭିବୃଦ୍ଧି ବିଷୟରେ ଗ୍ରାଜୁଏଟ୍‌ମାନଙ୍କୁ ସଦୁପଦେଶ ଦେଇ ସେମାନଙ୍କ ଉତ୍ସାହ ସଞ୍ଜାତ କରାଇବା ଲାଗି କେତେ ପୁରସ୍କାର ପ୍ରଦାନ କଲେ । କମିଶନର ପ୍ରଭୃତି ଭଦ୍ରବ୍ୟକ୍ତିମାନଙ୍କୁ ଦର୍ଶନକରି ସାୟଂକାଳ ସମୟରେ କଟକ ଗୁଡ଼ ଉଦ୍ଦେଶ୍ୟ ସ୍ଥାନ ପ୍ରତି ଯାଇଁ ଯାଉଁ ଭୁବନେଶ୍ୱରଠାରେ ଦୁଇଦିନ ଅବସ୍ଥାନ କରି ଭୁବନେଶ୍ୱର, କୋଣାର୍କ ଓ ଖଣ୍ଡଗିରି ମନ୍ଦିରମାନଙ୍କ ଶିଳ୍ପ କାର୍ଯ୍ୟ ସନ୍ଦର୍ଶନରେ ଅତ୍ୟନ୍ତ ପ୍ରୀତ ହେଲେ; ଏବଂ ପୂର୍ବକାଳୀନ ଓଡ଼ିଆମାନେ ଶିଳ୍ପକାର୍ଯ୍ୟରେ ପାରଦର୍ଶିତା ଲାଭ କରିଥିଲେ ବୋଲି ମନେ ମନେ ସନ୍ତୁଷ୍ଟ ହେଲେ ମାତ୍ର ଓଡ଼ିଆମାନଙ୍କର ଆଜିକାଲି ଅବନତ ଅବସ୍ଥା ଦେଖି ବହୁତ ବିଳାପ କଲେ । ତଦନ୍ତର ଯେଉଁସ୍ଥାନ ବୌଦ୍ଧ କୀର୍ତ୍ତିରେ ଶୋଭିତ, ଯେଉଁଠାରେ ସାଧାରଣତଃ ହିନ୍ଦୁମାନେ ଜାତି ଭେଦ ନ ରଖି ପ୍ରସାଦ ଗ୍ରହଣ କରୁଅଛନ୍ତି, ଯେଉଁଠାରେ ହିନ୍ଦୁମାନଙ୍କ ମୁକ୍ତିଦାତା ଓ ଆରାଧ୍ୟ ପ୍ରଭୁ ଅବସ୍ଥାନ କରିଅଛନ୍ତି ଏବଂ ଯେଉଁଠାରେ ଗଙ୍ଗବଂଶୀୟ ରାଜାମାନେ ରାଜଧାନୀ ସ୍ଥାପନ କରି ଭାରତବର୍ଷୀୟ ରାଜାମାନଙ୍କର ପୂଜ୍ୟ ହୋଇଅଛନ୍ତି, ସେହି ପୁରୀ ନଗରରେ କଳାବତୀ ଦିନେ ଠିକ ସମୟରେ ପ୍ରବେଶ ହେଲେ । ● ●

# ଅଷ୍ଟମ ପରିଚ୍ଛେଦ

## ଗଙ୍ଗବଂଶୀୟ ରାଜାମାନଙ୍କ କୀର୍ତ୍ତିକଳାପ

ଏହି ଚନ୍ଦନଯାତ୍ରା ଦେଖିବା ନିମନ୍ତେ ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ, ସୌରାଷ୍ଟ୍ର, ପାଣ୍ଡ୍ୟ, ଶୈଳ ପ୍ରଭୃତି ଦେଶମାନଙ୍କରୁ ଅନେକ ଯାତ୍ରୀମାନେ ଆସିଅଛନ୍ତି । ଏମାନଙ୍କର ଏଠାରେ ଏପରି ଦୃଢ଼ଭକ୍ତି ଯେ, ସାଧାରଣତଃ ସମସ୍ତେ ଜାତି ପ୍ରଭେଦ ପ୍ରଥା ପଛରେ ପକାଇ ନିଃସଂଶୟରେ ବଜାରରେ ବିକ୍ରୀତ ସଙ୍କୁଡ଼ି ମହାପ୍ରସାଦ ଗ୍ରହଣ କରନ୍ତି । ପ୍ରାତଃକାଳରେ ଯାତ୍ରୀ-ମାନଙ୍କରୁ କେହି ଶ୍ୱେତଗଙ୍ଗାରେ, କେହି ଇନ୍ଦ୍ରଦ୍ୟୁମ୍ନରେ, କେହି ମାର୍କଣ୍ଡରେ, କେହି ଅନ୍ୟ ତୀର୍ଥମାନଙ୍କରେ ସ୍ନାନକରି ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାଲାଗି ମନ୍ଦିରକୁ ଗମନ କରିବା ସମୟରେ ତତ୍ରସ୍ଥ ସେବକମାନେ ଯାତ୍ରୀମାନଙ୍କ ଗଳାରେ ପୁଷ୍ପମାଳା ଲମ୍ବାଇ ନିର୍ମାଲ୍ୟ ଦେଇ ପଇସା ପ୍ରାର୍ଥନା କରନ୍ତି । ଯେଉଁମାନେ ପଇସା ନ ଦିଅନ୍ତି ସେମାନଙ୍କୁ ନାନାପ୍ରକାର ତିରସ୍କାର କରନ୍ତି । ଏହି ସମସ୍ତ ବିଷୟ ଅବଲୋକନ କରି ଦିନେ ସାୟଂକାଳରେ ଚନ୍ଦନଯାତ୍ରାକୁ କଳାବତୀ ଗମନ କରିବା ସମୟରେ ଲକ୍ଷ୍ମୀପ୍ରିୟା ରସେଶ୍ୱରୀଙ୍କ କଳାବତୀ ପ୍ରତି ଲକ୍ଷ୍ୟ କରି କହିଲେ ।

ଲକ୍ଷ୍ମୀପ୍ରିୟା—ରସେଶ୍ୱରି ! ଏହି ସୁନ୍ଦରୀର ବେଶଭୂଷା ଦେଖିଲା-ମାତ୍ରକେ ବୋଧହୁଏ ଏ ଜଣେ ଉଚ୍ଚକୁଳସମ୍ଭୂତା, ଏହାକୁ କିପରି ଜାଣିବାକୁ ହେବ ? ଏ ଯେଣେ ଯିବେ ଏହାଙ୍କ ପଛେ ପଛେ ଯିବା ତେବେ ଯଦି ଜଣା ନ ପଡ଼ିବେ ଫେରି ବାହାରି ଆସିବା ।

ଏହି ବିଚାର କରି କଳାବତୀଙ୍କ ପଛେ ପଛେ ଦୁହେଁ ଯାଉଥିଲେ । ଚନ୍ଦନ ତଳାଉରେ ଚାପ ରଖାଥିଲା । ଲୋକେ ସଂକୀର୍ତ୍ତନ କରି ମଦନ ମୋହନ ମହାପ୍ରଭୁଙ୍କୁ ଚାପରେ ବିଜେ କରାଇ ନାଚ ଖେଳି କରି ମହାପ୍ରଭୁଙ୍କୁ ତଳାଉରେ ଖେଳାଉଥିଲେ । ଏହି ଯାତ୍ରା ଦେଖିବା ନିମନ୍ତେ ଅନେକ ଲୋକ ସେଠାରେ ସମବେତ ହୋଇଥିଲେ ।

ଏହି ସମସ୍ତ ବିଷୟ କଳାବତୀ ଅବଲୋକନ କରି ସନ୍ତୁଷ୍ଟ ମନାହୋଇ ପ୍ରତ୍ୟାବର୍ତ୍ତନ କାଳରେ ତର୍କ ପଞ୍ଚାନନଙ୍କ ସହିତ ତାହାଙ୍କର ସାକ୍ଷାତ ହେଲା । ପଞ୍ଚାନନ ପ୍ରସ୍ତାବବଶତଃ ଏ ପଣ୍ଡିତା ବୋଲି ଜ୍ଞାତ ହେଲେ । ପଣ୍ଡିତମାନେ ଯେଉଁଠାରେ ସାଧାରଣତଃ ସମାବେଶ ହୁଅନ୍ତି, ଯେଉଁଠାରେ ଉପବିଷ୍ଟ ହେଲେ ଗୁଣିଗଣସମ୍ମାନିତ ବ୍ୟକ୍ତିମାନଙ୍କଦ୍ୱାରା ପ୍ରଶଂସିତ ହୁଅନ୍ତି, ସେହି ମୁକ୍ତମଣ୍ଡପକୁ ପଞ୍ଚାନନଙ୍କ ସହିତ କଳାବତୀ ପ୍ରସ୍ଥାନ କଲେ । ତତ୍ରସ୍ଥ ପଣ୍ଡିତମାନେ କଳାବତୀଙ୍କ ଆଗମନରେ ଅତ୍ୟନ୍ତ ଶଙ୍କିତ ହେଲେ । କଳାବତୀ ମୁକ୍ତମଣ୍ଡପରେ ପ୍ରବିଷ୍ଟ ହୋଇ ସମସ୍ତଙ୍କୁ ମାନ୍ୟକଲେ । ତତ୍ପରେ କେତେକାଳଯାଏ କଳାବତୀଙ୍କ ସହିତ ପଣ୍ଡିତମାନେ ଶାସ୍ତ୍ର ଚର୍ଚ୍ଚାକଲେ । ଅବଶେଷରେ ଜାଣିଲେ ଯେ, କଳାବତୀ ମହତ୍ ପଣ୍ଡିତା ଅଟନ୍ତି । କଳାବତୀ ପଣ୍ଡିତମାନଙ୍କରେ ପ୍ରଶଂସିତା ହେବା ପରେ ପଞ୍ଚାନନଙ୍କ ଅତିଥି ହୋଇ କେତେକାଳ ପୁରୀରେ ରହିବାକୁ ସ୍ଥିର କଲେ । ଏହି ସମୟରେ ରାସେଶ୍ୱରୀ ଓ ଲକ୍ଷ୍ମୀପ୍ରିୟା ଦୁହେଁ ହାଟିରାମ ମହନ୍ତଙ୍କ ମଠରକୁ ତରତର ହୋଇ ଯାଇ ମହନ୍ତଙ୍କୁ କହିଲେ ।

ଲକ୍ଷ୍ମୀପ୍ରିୟା ଓ ରାସେଶ୍ୱରୀ—ମହାପ୍ରଭୋ ! ଜଣେ ପଣ୍ଡିତା କ୍ଷତ୍ରିୟ ମହିଳା ପଞ୍ଚାନନଙ୍କ ଗୃହରେ ଅତିଥି ହୋଇଅଛନ୍ତି ।

ମହନ୍ତ—ଭଲ ହେଲା ରାସେଶ୍ୱରି ! ତର୍କ ପଞ୍ଚାନନଙ୍କ ଗୁଣ କାହାକୁ ଜଣାନାହିଁ ? କେତେ ଦିନ ଯାଉ ସବୁ ବିଷୟ ଧରାପଡ଼ିବ । ତେବେ ଆମ୍ଭେ ପ୍ରସ୍ତୁତ କରିବା । ଏବେ କାତର ହେବାର ଭଲ ନୁହେଁ !

କଳାବତୀ ଓ ପଞ୍ଚାନନ ପରସ୍ପର ତର୍କଶାସ୍ତ୍ର ମୀମାଂସା କଲେ । ମୀମାଂସାରେ କଳାବତୀଙ୍କ ସହିତ ପଞ୍ଚାନନ ସମକକ୍ଷ ହୋଇପାରିଲେ ନାହିଁ ତଥାପି ବହୁ ଆଦର ସହିତ ତାହାଙ୍କୁ ଅତିଥି ସତ୍କାର କଲେ । କଳାବତୀ ସୁବିଦ୍ୱାନ୍ ସଂସ୍କୃତ-ହିନ୍ଦୁମତାବଲମ୍ବୀ କୌଣସି କ୍ଷତ୍ରିୟ ପୁରୁଷଙ୍କ ସହିତ ବିବାହ ହେବେ ବୋଲି ପଞ୍ଚାନନ ଅବଗତ ହେଲେ; ଏବଂ କେତେ ଦୂର ପର୍ଯ୍ୟନ୍ତ କଳାବତୀଙ୍କ ଅନୁଯାୟୀ ହେବାକୁ ସଙ୍କଳ୍ପ କଲେ । କଳାବତୀ ପୁରୀରେ ଅନେକ ଦିନ ଅବସ୍ଥାନ କରିବା ଯୋଗୁଁ ତାହାଙ୍କର ମନରେ ଗୋଟିଏ ଅପୂର୍ବ ଭାବ ଉଦୟ ହେଲା । •ହିନ୍ଦୁମାନଙ୍କରେ ଜାତିପ୍ରଭେଦ ପ୍ରଥାଥିଲେ ମଧ୍ୟ

ଭୋଜନରେ ଜାତି । ପ୍ରଭେଦ ନାହିଁ । ଲୋକମାନଙ୍କୁ ଭୁଲାଇବା ନିମନ୍ତେ ମହାପ୍ରସାଦ ଛଳରେ ଜାତି ପ୍ରଭେଦ ନ ରଖି ଅନ୍ୟତ୍ର ସମସ୍ତେ ଏକତ୍ର ଭୋଜନ କରିବା ନିଷେଧ ବୋଲି କହନ୍ତି । ଏହା କେବଳ ଭ୍ରମ ମାତ୍ର । ପୃଥିବୀର ଅନ୍ୟାନ୍ୟ କ୍ଷେତ୍ରମାନଙ୍କରେ ମଧ୍ୟ ଏହିପରି ସମସ୍ତ ଜାତି ଏକତ୍ର ଭୋଜନ କଲାପରି ବୋଧ ହେଉଅଛି । ଭୋଜନ କଲେ ଜାତିଭ୍ରଷ୍ଟ ହୁଏ ନାହିଁ କିନ୍ତୁ ଅସଭ୍ୟ ଜଗତରେ ଜାତି ପ୍ରଭେଦ ନ ରଖିଣୁ ଖିଆ-ପିଆ କରିବା କେବଳ ଅନୁଚିତ ।

ଦିନେ ପ୍ରାତଃକାଳରେ ପଞ୍ଚାନନ କଳାବନ୍ଧିଙ୍କ ହସ୍ତରେ କୌତୁକାର୍ଥେ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦେଲେ । ସେହି ମୁଦ୍ରାରେ "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱରାଧିପ ବୀର ଭୂତ ଭୈରବ ଦେବ ସାଧୁ ଶାସନୋତ୍କର୍ଷ ରାଉତ୍ତରାୟ ଅତୁଳ ବଳ ପରାକ୍ରମ ସଂଗ୍ରାମ ସହସ୍ର ବାହୁ କ୍ଷତ୍ରିୟ କୁଳ ଧୂମକେତୁ" ବୋଲି ଖୋଦିତ ଥିଲା । କଳାବନ୍ଧି ଏହା ଦେଖି ପଞ୍ଚାନନଙ୍କୁ ପଚାରିଲେ ।

କଳାବନ୍ଧି—କେଉଁ ଗଜପତି ଏତେ ପରାକ୍ରମଶାଳୀ ଥିଲେ ? କେଉଁ ବଂଶଜ ଏବଂ କେଉଁଠାରେ ରାଜୁତି କରିଥିଲେ ? ତାହାଙ୍କର ବଂଶଧରମାନେ କେଉଁଠାରେ କି କି କୀର୍ତ୍ତି ସ୍ଥାପନ କରିଅଛନ୍ତି ସବିଶେଷରେ କହିବା ହେଉନ୍ତୁ ।

ପଞ୍ଚାନନ—ଯେଉଁ ଚୋଡ଼ଗଙ୍ଗଦେବ ଗଙ୍ଗବଂଶର ଆଦିପୁରୁଷ ଥିଲେ, ସେ କେଶରୀ ବଂଶଜ ସୁବର୍ଣ୍ଣକେଶରୀଙ୍କୁ ରାଜପଦରୁ ଚ୍ୟୁତକରି ଏହି ଉତ୍କଳରେ ରାଜତ୍ୱ କରିଥିଲେ, ସେହି ମହାତ୍ମାଙ୍କ ପ୍ରପୌତ୍ର ଅନଙ୍ଗ ଭୀମଦେବ ଗଙ୍ଗବଂଶ ନାମରେ ଖ୍ୟାତ । ଏହି ଜଗନ୍ନାଥ ଦେଉଳ ଏହି ମହାତ୍ମାଙ୍କ ଦ୍ୱାରା ନିର୍ମିତ ହୋଇଅଛି । ଏହାଙ୍କ ସମୟରେ ଏହି ରାଜ୍ୟ ଉତ୍ତରରେ ହୁଗୁଳି, ଦକ୍ଷିଣରେ ଗୋଦାବରୀ ଓ କର୍ଣ୍ଣାଟ, ପୂର୍ବରେ ସାଗର, ପଶ୍ଚିମରେ କଳାହାଣ୍ଡି ଓ ବସ୍ତର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଯେଉଁ ଲାଙ୍ଗୁଳା ନରସିଂହ ଦେବ କୋଣାର୍କ ଦେଉଳ ନିର୍ମାଣ କରିଅଛନ୍ତି ସେ ଅନଙ୍ଗଭୀମଦେବଙ୍କ ପ୍ରପୌତ୍ର ଅଟନ୍ତି । ଏହି ବଂଶରେ କପିଳେନ୍ଦ୍ର ଦେବ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର

ଉପପତ୍ନୀଙ୍କଠାରୁ ପୁରୁଷୋତ୍ତମଦେବ ଓ ଧର୍ମପତ୍ନୀଙ୍କଠାରୁ ଅଷ୍ଟାଦଶ ପୁତ୍ର ଜାତ ହୋଇଥିଲେ । ପୁରୁଷୋତ୍ତମଦେବ ପିତାଙ୍କର ପ୍ରିୟପୁତ୍ର ଥିବାରୁ ରାଜ୍ୟଭାର ଗ୍ରହଣ କଲେ ।" ଅପର ଅଷ୍ଟାଦଶ ପୁତ୍ରଙ୍କ ବଂଶଧରମାନେ ଆଜ ପର୍ଯ୍ୟନ୍ତ ସମ୍ବଲପୁର ଓ ଗଞ୍ଜାମରେ ବିଦ୍ୟମାନ ଅଛନ୍ତି । ପୁରୁଷୋତ୍ତମଦେବ କାଞ୍ଚି ଜୟ କରିଥିଲେ । ଯେ ବୈଷ୍ଣବଧର୍ମାବଲମ୍ବୀ, ସେ ଯାଜପୁରର ବରାହନାଥ ଦେଉଳ ନିର୍ମାଣ କରିଅଛନ୍ତି ଏବଂ ଯାହାଙ୍କ ସମୟରେ ଓଡ଼ିଆ ଭାଷା ଜନ୍ମଗ୍ରହଣ କରିଅଛି, ସେହି ପ୍ରତାପରୁଦ୍ର, ପୁରୁଷୋତ୍ତମଦେବଙ୍କ ପୁତ୍ର ଥିଲେ । ଏହାଙ୍କ ବଂଶଧରମାନେ ଓଡ଼ିଶାରେ ରାଜ୍ୟଶାସନ କରି ଆସୁ-ଅଛନ୍ତି । ଗଞ୍ଜାମ ଅନ୍ତର୍ଗତ ପାରଲା ନଗରରେ ଯେଉଁ ପ୍ରତାପଚନ୍ଦ୍ର ନାରାୟଣ ଦେବ ରାଜ୍ୟଶାସନ କରୁଅଛନ୍ତି, ତାହାଙ୍କର ଧର୍ମପତ୍ନୀ ମହେନ୍ଦ୍ରତନୟା ନଦୀତୀରସ୍ଥ ମେକସୁପେଟ୍ଟା ଗ୍ରାମରେ ରାଧାଗୋବିନ୍ଦ ମନ୍ଦିର ନିର୍ମାଣ କରିଅଛନ୍ତି ।

କଳାବନ୍ତୀ କିଛି ପ୍ରତ୍ୟୁତ୍ତର ନ ଦେଇ ଆରଦିନ ପ୍ରାତଃକାଳରେ ଦକ୍ଷିଣ ଦେଶ ପ୍ରତି ଯାତ୍ରା କଲେ ।



# ନବମ ପରିଚ୍ଛେଦ

## ସଧବା ସବାହର ପର୍ଯ୍ୟାଲୋଚନା

ରେଳପଥରେ ଯାଉଁ ଯାଉଁ ସିଂହାଚଳଠାରେ କଳାବତୀ ଉତ୍ତୀର୍ଣ୍ଣ ହୋଇ ଦେଖିଲେ ଯେ ଗ୍ରାମଟି ଅତି କ୍ଷୁଦ୍ର, ସେଠାରେ କେବଳ ଶ୍ରୀବୈଷ୍ଣବମାନେ ବାସ କରିଅଛନ୍ତି । ତତ୍ରସ୍ଥ ମନୁଷ୍ୟମାନଙ୍କର ସ୍ୱାସ୍ଥ୍ୟ ଅତି ମନ୍ଦ, ପ୍ଲୀହା ରୋଗରେ ଅନବରତ ପୀଡ଼ିତ ଅଛନ୍ତି । ମଇଳା ପଦାର୍ଥମାନ ଇତସ୍ତତଃ ପଡ଼ି ରହିଅଛି । ଏହି ସମସ୍ତ କଷ୍ଟ ସହ୍ୟକରି କଳାବତୀ ନୃସିଂହଙ୍କ ମହାତ୍ମ୍ୟ ବୁଝିବାକୁଗି ଦିନେ ମାତ୍ର ସେଠାରେ ବସତି କଲେ । ନୃସିଂହଙ୍କ ଦର୍ଶନ କରିବା ଲାଗି ପ୍ରାୟ ଏକ ସହସ୍ର ପାବଚ୍ଛ ଓ ସପ୍ତସଂଖ୍ୟକ ଜଳଧାରା ଅତିକ୍ରମି ଯିବାର ଆବଶ୍ୟକ । କଳାବତୀ ପ୍ରାତଃକାଳରେ ଶୁଚିବନ୍ତ ହୋଇ ନୃସିଂହଙ୍କ ଦର୍ଶନ କରିବାକୁ ବାହାରିଲେ । ପର୍ବତ ଆରୋହଣ କରିବାବେଳେ କୌତୁକବଶତଃ ପ୍ରତି ଜଳଧାରାରେ ସ୍ନାନ କଲେ । କଳାବତୀ ମନ୍ଦିରର ଶିଳ୍ପ କାର୍ଯ୍ୟ, ପର୍ବତର ମନୋହର ଶୋଭା, ମନେ ମନେ ଭାବି ଚମତ୍କୃତ ହେଉଅଛନ୍ତି । ଇତ୍ୟବସରରେ ଶ୍ରୀ ନୃସିଂହ ମହାପ୍ରଭୁଙ୍କର ଧୂପ, ଦୀପ, ନୈବେଦ୍ୟ ସମାପନ ହେଲା ।

ଦକ୍ଷିଣ ପ୍ରଦେଶର ବ୍ରାହ୍ମଣଠାରୁ ଶୂଦ୍ର ପର୍ଯ୍ୟନ୍ତ ଜାତି ବୈଷମ୍ୟ ଦୂରେ ପକାଇ ମନ୍ଦିରରେ ପ୍ରସାଦ ଗ୍ରହଣ କରୁଅଛନ୍ତି; ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଖିଆ-ପିଆ ବିଷୟରେ ପ୍ରଥମତଃ ଜାତି ପ୍ରଭେଦ ନଥିଲା । ମାତ୍ର କୌଣସି ଗୁରୁତର କାରଣରୁ ସବୁ ସିନା ଜାତି ପ୍ରଭେଦରେ ଭୋଜନ କରିବାକୁ ସ୍ୱୀକାର ନକରି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଭୋଜନ କରିବାକୁ ଅଙ୍ଗୀକାର କରିଥିଲାପରି ବୋଧ ହେଉଅଛି; ଏବଂ ମତାନ୍ତମାନ ହେତୁ ଏକ ମତାବଲମ୍ବୀମାନେ ଆପଣା ଆପଣା ଆରାଧ୍ୟ ଦେବତାଙ୍କ ପ୍ରସାଦ ନିର୍ଦ୍ଦିଷ୍ଟ ସ୍ଥାନରେ ଜାତିପ୍ରଭେଦ ପ୍ରଥା ଦୂରେରଖି ଭୋଜନ କରିବାକୁ ଅଙ୍ଗୀକାର

କରିଥିଲେ ତାହା ମଧ୍ୟ ବୋଧ ହେଉଅଛି । ଏହି କାରଣରୁ ଓ ଅନ୍ୟାନ୍ୟ କାରଣମାନଙ୍କରୁ ପୂର୍ବେ ଯେଉଁ ହିନ୍ଦୁମାନେ ବିଦ୍ୟା, ଜଳ ଓ ସ୍ଥଳରେ ବାଣିଜ୍ୟ, ଦେଶ ପର୍ଯ୍ୟଟନ ପ୍ରଭୃତି ସମସ୍ତ ଗୁଣରେ ଅନ୍ୟାନ୍ୟ ଜାତିମାନଙ୍କ ଅପେକ୍ଷା ଉଚ୍ଚତର ସୋପାନ ଅଧିରୋହଣ କରିଥିଲେ, ସେହି ଭାରତୀୟମାନେ ଅଧୁନା ଇଂରାଜ ଶାସନରେ ଉତ୍ତମରୂପେ ପରିପାଳିତ ହେଲେହେଁ ନିଜ କର୍ମଦୋଷରୁ ତେଜ, ବୀର୍ଯ୍ୟ ଓ ଶୌର୍ଯ୍ୟ ହରାଇ ଦୁର୍ଦ୍ଦଶାରେ ପତିତ ହୋଇଅଛନ୍ତି, ମାତ୍ର ଯେଉଁମାନେ ବନ୍ୟ ମୃଗମାନଙ୍କପରି ବନରେ ଇତସ୍ତତଃ ଭ୍ରମଣ, ଅପକ୍ୱ ମାଂସ ଭୋଜନ ଓ ବୃକ୍ଷର ବକ୍କଳ ପରିଧାନ କରୁଥିଲେ, କେବଳ ମୃତ୍ପାତ୍ରରେ କାଳଯାପନ କରୁଥିଲେ, ଅସ୍ତ୍ରଶସ୍ତ୍ରର ବ୍ୟବହାର ଜାଣି ନଥିଲେ, ଏବଂ ବୃକ୍ଷ ଓ ପାଷାଣକୁ ଆରାଧ୍ୟ ଦେବତା ମଣୁଥିଲେ, ସେହି ବ୍ରିଟନବାସୀମାନେ ଏବେ ପୃଥିବୀର ଉନ୍ନତତମ-ସଭ୍ୟତା-ସୋପାନ ଆରୋହଣ କରି ଭାରତରେ ଏକାଧିପତ୍ୟ ସ୍ଥାପନ କରିଅଛନ୍ତି । କଳାବନ୍ତୀ ଏହି ସମସ୍ତ କଥା ଅବଗତ କରି ବିମନା ହୋଇ ଦକ୍ଷିଣଯାତ୍ରା କରିବାକୁ ଯାଉ ଯାଉ ଦେଖିଲେ ଯେ ଗୋଦାବରୀ ତୀରବର୍ତ୍ତୀ ରାଜମହେନ୍ଦ୍ରୀରେ ବାଳ୍ୟ ବିଧବା ନିମନ୍ତେ ଆନ୍ଦୋଳନ ଲାଗିଅଛି । ସେଠାରେ ଅନେକ ବ୍ରାହ୍ମଣ ସମବେତ ହୋଇଅଛନ୍ତି । ଏହାର ମର୍ମ ବୁଝିବା ନିମନ୍ତେ ସେଠାରେ କଳାବନ୍ତୀ ଉତ୍ତୀର୍ଣ୍ଣ ହେଲେ । ଶ୍ରୀମାନ୍ ଓ ପାନ୍ତୁଲୁ ଜଣେ ନିଯୋଗି ତୈଲଙ୍ଗୀ ବ୍ରାହ୍ମଣ, ତାହାଙ୍କର ଶଶିରେଖା ବୋଲି ଗୋଟିଏ ଦୁହିତା ଥିଲା । ପ୍ରାୟ ପାଞ୍ଚବର୍ଷ ବୟଃକ୍ରମରେ ପ୍ରଥମତଃ ତାହାକୁ ବିବାହ ଦେଇଥିଲେ । ବାଳିକାଟି ନବମ ବର୍ଷରେ ପଦାର୍ପଣ କରିବା ସମୟରେ ବିଧବା ହୋଇଗଲା । ପାନ୍ତୁଲୁ ନବସଂସ୍କାର ବ୍ୟବସ୍ଥାନୁସାରେ ବିଧବା ଦୁହିତାର ପୁନର୍ବିବାହ କରିବାକୁ ସ୍ଥିର କଲେ । ବଲବନ୍ତ ରାଓ ଜଣେ ସାର୍ଦ୍ଧ୍ୱ ବ୍ରାହ୍ମଣ । ରାଜମହେନ୍ଦ୍ରୀ କଲେଜରେ ବି. ଏ. ଶ୍ରେଣୀରେ ବିଦ୍ୟାଭ୍ୟାସ କରୁଥିଲେ । ଦ୍ରବ୍ୟାଶାରେ ଏହି ବିଧବା ବାଳିକାକୁ ବିବାହ ହେବା ନିମନ୍ତେ ମନ ବଳାଇଥିଲେ । ଏହି ଦୁଇ ଜଣଙ୍କର ବିବାହ ଚଳାଇବା ନିମନ୍ତେ ଶ୍ରୀ ଗଣେଶଲିଙ୍ଗ ପାନ୍ତୁଲୁ ଦୃଢ଼ସଙ୍କଳ୍ପ କରି ଅଗ୍ରସର ହୋଇଥିଲେ । ଏପରି ବିବାହ କାର୍ଯ୍ୟ ଚଳାଇବାର ଅବିଧେୟ ବୋଲି ଶାସନୀୟ ବ୍ରାହ୍ମଣମାନେ ନିଷେଧ କରୁଥିଲେ । ଏମାନଙ୍କ ପ୍ରତି ଦୃଷ୍ଟିପାତ ନ କରି ଶ୍ରୀ ଗଣେଶଲିଙ୍ଗ ପାନ୍ତୁଲୁ

ବିବାହ କାର୍ଯ୍ୟ ଚଳାଇଦେଲେ । ଏହି ଅବିଧେୟ କାର୍ଯ୍ୟ ବ୍ରାହ୍ମଣମାନେ ଦେଖି ଦୀର୍ଘନିଶ୍ୱାସ ପରିତ୍ୟାଗପୂର୍ବକ ଆପଣା ଆପଣା ଗ୍ରାମକୁ ପ୍ରଧାବିତ ହେଉଥିଲେ । ଏହି ସମସ୍ତ କାର୍ଯ୍ୟ କଳାବତୀ ଅବଲୋକନ କରି ଦୁଇଦିନ ସେଠାରେ ଅବସ୍ଥାନ କଲେ । ପରଦିନ ସାୟଂକାଳ ପାଞ୍ଚଘଣ୍ଟା ସମୟରେ ରାଜମହେନ୍ଦ୍ର ଟାଉନହଲରେ ଗୋଟିଏ ବୃହତ୍ ଅଧିବେଶନ ହୋଇଥିଲା । ସେହି ସଭାରେ କଳାବତୀ ଉପସ୍ଥିତ ହୋଇଥିଲେ । ବାଲ୍ୟବିବାହ ସମର୍ଥନ କରି ଅନେକ ଲୋକେ ବକ୍ତୃତା ପ୍ରଦାନ କରୁଥିଲେ । କଳାବତୀ ସେହି ସଭାରେ ଦଣ୍ଡାୟମାନା ହୋଇ କହିବାକୁ ଲାଗିଲେ ।

କଳାବତୀ—ମହାଶୟବର୍ଗ ! ପ୍ରାଚୀନକାଳରେ ସମସ୍ତ ଜାତିରେ ବିଧବା ବିବାହ ପ୍ରଥା ଥିଲା । କୌଣସି ଅଭାବ ଯୋଗୁଁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଜାତିମାନଙ୍କରେ ବିଧବା ବିବାହ ରହିତ ହେଲା । ମାତ୍ର ଶୂଦ୍ରମାନେ ଆଜଯାଏ ବିଧବା ବିବାହ ଚଳାଇ ଆସୁଅଛନ୍ତି । ପରାଶର ସ୍ମୃତିରେ ।

"ନଷ୍ଟେମୃତେ ପ୍ରବ୍ରଜିତେ କ୍ଳୀବେ ଚ ପତିତେ ପତୌ
ପଞ୍ଚସ୍ୱାପତ୍ସୁ ନାରୀଣାଂ ପତିରନ୍ୟୋ ବିଧୀୟତେ ।"

ଏହିପରି ଲେଖା ଅଛି ସତ୍ୟ କିନ୍ତୁ ଅଧୁନା ଏ ବିଧିଟି କାର୍ଯ୍ୟରେ ପରିଣତ ହୋଇନାହିଁ । ବିଧବା ବାଳିକାମାନଙ୍କୁ ଫେରି ବିବାହ କରିବାର ବିଶେଷତଃ ଦୋଷ ନୁହେ । ମାତ୍ର କ୍ରମଶଃ ବିଧବା ଯୁବତୀମାନେ ପୁନର୍ବିବାହ ହେବାକୁ ମାନସ କଲାଇବେ । ଦେଖ ମନୁଷ୍ୟମାନେ ଶୈଶବାବସ୍ଥାରୁ ପ୍ରୌଢ଼ାବସ୍ଥାକୁ ଯେପରି ପ୍ରାପ୍ତ ହୁଅନ୍ତି, ଶାସନକର୍ତ୍ତାମାନଙ୍କର ଆଇନମାନ କ୍ରମଶଃ ଯେପରି ସୁଲଭରୁ କଠିଣ ଅବସ୍ଥାକୁ ଯାଏ, ମତୋଦ୍ଧାରକମାନଙ୍କର ଆଦେଶମାନ କ୍ରମଶଃ ଯେପରି ମତସ୍ଥ ଲୋକମାନଙ୍କର ଉତ୍ସାହ ଭଗ୍ନ କରନ୍ତି, ତଦ୍‌ବତ୍ ଏହି ବିଧବା ବାଳିକାମାନଙ୍କର ବିବାହ ବ୍ରାହ୍ମଣ ସମାଜକୁ କାଳେ କଳଙ୍କିତ କରିବ । ଏହି ଅଭାବ ମୋଚନାର୍ଥେ ଗୋଟିଏ କାର୍ଯ୍ୟ ଅଛି । ଆପଣମାନେ ତାହା ଭଲରୂପେ ଶ୍ରବଣ କରି ଇଚ୍ଛାହେଲେ ପାଳନ କରନ୍ତୁ ବା ନକରନ୍ତୁ, ତାହା ଏହି—ବାଲ୍ୟାବସ୍ଥାରେ ବାଳିକାମାନଙ୍କୁ ବିବାହ ନ ଦେଇ କ୍ଷତ୍ରିୟ ଯୁବତୀମାନଙ୍କପରି ଯୌବନାବସ୍ଥା

ପ୍ରାପ୍ତହେଲେ ଏମାନଙ୍କୁ ବିବାହ ଦେଲେ କାର୍ଯ୍ୟଟି ସୁଶୃଙ୍ଖଳା ରୂପେ ଚଳିପାରିବ ବୋଲି ବିଶ୍ୱାସ କରେ । ପ୍ରାଚୀନ କାଳରେ ମଧ୍ୟ ସ୍ୱର ଜାତିର ଯୁବତୀମାନଙ୍କୁ ବିବାହ କରିଥିଲେପର ମନୁ ସ୍ମୃତିରେ ଲେଖାଅଛି । ତଦନୁସାରେ କ୍ଷତ୍ରିୟମାନେ ଆଜି ପର୍ଯ୍ୟନ୍ତ ଚଳୁଅଛନ୍ତି । ଜାତିପ୍ରଭେଦରେ ବ୍ରାହ୍ମଣମାନେ ପ୍ରଥମ ସୋପାନରେ ଏବଂ କ୍ଷତ୍ରିୟମାନେ ଦ୍ୱିତୀୟ ସୋପାନରେ ଅବସ୍ଥାନ କରିଅଛନ୍ତି । ବିଶେଷତଃ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ଘନିଷ୍ଠ ସମ୍ବନ୍ଧ ଅଛି । ବ୍ରାହ୍ମଣମାନଙ୍କର ଗୌରବ ସମ୍ମାନ ଓ ମର୍ଯ୍ୟାଦା କ୍ଷତ୍ରିୟମାନଙ୍କଠାରେ ନିର୍ଭର କରିଅଛି । ଆଜିପର୍ଯ୍ୟନ୍ତ କ୍ଷତ୍ରିୟ-ମାନଙ୍କରେ ବିଧବା ବିବାହ ପ୍ରଥାର ବିନ୍ଦୁବିସର୍ଗ ନାହିଁ । ବିଧବା ବିବାହ କରିବାକୁ ମଧ୍ୟ ଆଜିପର୍ଯ୍ୟନ୍ତ କ୍ଷତ୍ରିୟମାନେ ମନ ବଳାଇ ନାହାନ୍ତି । ବ୍ରାହ୍ମଣମାନେ ବିବାହ ବିଷୟରେ କ୍ଷତ୍ରିୟମାନଙ୍କ ପ୍ରଥା ଅବଲମ୍ବନ କଲେ । ରଜସ୍ୱଳା ଦୋଷରେ ଲିପ୍ତ ହେବେ । ଏହା ଗୁରୁତର ଦୋଷ ନୁହେଁ । ଯଦି ଏହା ଗୁରୁତର ଦୋଷ ବୋଲି ଆପଣମାନେ ବିଚାର କରିବେ, ତେବେ ଆପଣମାନେ ଅଧୁନା ଚଳାଇବା ବିଧବା ବିବାହ ଗୁରୁତମ ଦୋଷ ପଡ଼ିବ । ଏହିକାର୍ଯ୍ୟ ପରିତ୍ୟାଗ କଲେ ବାଲ୍ୟ ବିଧବାମାନେ ସଂସାରିକ ସୁଖରୁ ବଞ୍ଚିତ ହେବେ । ଅତଏବ ପରିଶେଷରେ ଆମ୍ଭର ନିବେଦନ ଏହି ଯେ, ବିବାହ ବିଷୟରେ କ୍ଷତ୍ରିୟମାନଙ୍କ ପ୍ରଥା ଅବଲମ୍ବନ କଲେ ଆପଣମାନଙ୍କର କିଛିହିଁ ଅନିଷ୍ଟ ହେବନାହିଁ । ଏହି କାର୍ଯ୍ୟ କରିବାକୁ ବ୍ରାହ୍ମଣ ସମସ୍ତେ ଐକ୍ୟ ହେବା ବିଧେୟ । ଏଥିଦ୍ୱାରା ଆପଣା ଜାତିର ଗୌରବ ଲିଭିବ ହେବନାହିଁ । ବର୍ତ୍ତମାନ ଅନ୍ୟ ଭିନ୍ନଜାତି ଦ୍ୱାରା ଯେପରି ବ୍ରାହ୍ମଣମାନେ ସମ୍ମାନିତ ପରେ ମଧ୍ୟ ସେପରି ସମ୍ମାନିତ ହେବେ । ବିଧବାମାନଙ୍କ ସଂଖ୍ୟା ବ୍ରାହ୍ମଣ ଜାତିରେ ବିରଳ ଲକ୍ଷିତ ହେବ ।

କନାବଟୀଙ୍କର ସୁମିଷ୍ଟ ବାକ୍ୟ ଶ୍ରବଣ କରି ସମସ୍ତେ ସାତିଶୟ ସନ୍ତୁଷ୍ଟ ହେଲେ । ସଭାସଦ୍‌ଗଣଙ୍କରେ କନାବଟୀ ପ୍ରଶଂସିତା ହୋଇ ନିଜ ଆବାସକୁ ପ୍ରସ୍ଥାନ କଲେ ।



# ଦଶମ ପରିଚ୍ଛେଦ

## ଜାତୀୟ ସମିତି

ଆରଦିନ ପ୍ରାତଃକାଳରେ କଳାବତୀ ଷ୍ଟୀମରରେ ଗୋଦାବରୀ ନଦୀ ପାରହୋଇ ରେଳପଥଦେଇ ମାନ୍ଦ୍ରାଜ ନଗରକୁ ଯିବାକୁ ସ୍ଥିର କଲେ । ରେଲ୍‌ପଥ ଦେଇ ଯାଉଁ ଯାଉଁ କାମ୍ବମୁଠାରେ ରେଲ ପର୍ବତ ଭେଦ କରି ଟନେଲମାନଙ୍କରେ ଯିବାର ଅବଲୋକନ କରି ସାତିଶୟ ଚମତ୍କୃତ ହୋଇ ମନେ ମନେ ବିଚାର କଲେ । ଧନ୍ୟ ମାନବ ଶକ୍ତି ! ଯେଉଁ ପ୍ରକୃତ ପଦାର୍ଥ ସ୍ୱଭାବରେ ଅଭେଦ୍ୟ, ସେହି ପଦାର୍ଥମାନଙ୍କୁ କଳକୌଶଳରେ ମନୁଷ୍ୟମାନେ ଭେଦ କରନ୍ତି; ତାହାର ପରେ ସେ ଏଠାରେ ପ୍ରାପ୍ତ ହୋଇଛୁ ତତ୍ପରେ ନନ୍ଦିଅଲଠାରେ ପ୍ରବିଷ୍ଟ ହେଲେ । ସେଦିନ ସେଠାରେ ରହି ଗ୍ରାମରେ ବୁଲି ଦେଖିଲେ ଯେ, ପ୍ରତି ଗୃହ ପ୍ରସ୍ତରରେ ଆଚ୍ଛାଦିତ । ସେଠାରେ ସାଧାରଣ ମନୁଷ୍ୟମାନଙ୍କର ବେଶଭୂଷା ଦେଖିବାକୁ ଅସହ୍ୟ । ଏହି ଦେଶୀୟ ଆଦିମ ନିବାସୀମାନେ ବିଶେଷତଃ ଅଶିକ୍ଷିତ । ସେମାନଙ୍କର ଅବନତ ଅବସ୍ଥା ଦେଖି କଳାବତୀ ଅତି ଦୁଃଖିତ ହେଲେ । ପରେ ସାୟଂ ସମୟରେ ରେଲ ଚଢ଼ି ଆରଦିନ ପ୍ରାତଃକାଳରେ ମାନ୍ଦ୍ରାଜରେ ଉପସ୍ଥିତ ହେଲେ । ରେଲଷ୍ଟେସନଠାରେ ନାର୍ଟନ ସାହେବ, ଗୌରୀବର ନାୟର, ଶ୍ରୀ ନନ୍ଦାଗୁରୀ, ଶ୍ରୀ ବଣ୍ଟପନ୍ତପିଲ୍ଲେ ପ୍ରଭୃତି ମାନ୍ଦ୍ରାଜର ଭଦ୍ରବ୍ୟକ୍ତିମାନେ କାର୍ଯ୍ୟବଶତଃ ପରିଭ୍ରମଣ କରୁଥିଲେ । ସେହି ସମୟରେ ମାନ୍ଦ୍ରାଜ ରାଜଧାନୀର ନାନାଦିଗ୍ ଦେଶରୁ ଭାରତ ଜାତୀୟ ମହାସମିତିର ଡେଲିଗେଟ୍ ସ୍ୱରୂପ ଅନେକ ଭାରତୀୟ ଭଦ୍ରସନ୍ତାନମାନେ ସେଠାରେ ପ୍ରବିଷ୍ଟ ହେଲେ । ସେମାନଙ୍କୁ ଆଦରସହ ନେବାଲାଗି ଗୌରୀବର ନାୟର ପ୍ରଭୃତି କାଙ୍ଗ୍ରେସ୍ ସଭ୍ୟମାନେ ଅଗ୍ରସର ହୁଅନ୍ତେ ହଠାତ୍ କଳାବତୀ ସେମାନଙ୍କ ଦୃଷ୍ଟି ପଥରେ ପଡ଼ିଲେ । କଳାବତୀଙ୍କ ଅଲୌକିକ ରୂପ ସନ୍ଦର୍ଶନ କରି ତାହାଙ୍କ ସହିତ ଏମାନେ

କଥୋପକଥନ କରିବାକୁ ଆରମ୍ଭ କଲେ । ଏହି ସମୟରେ ଶ୍ରୀ ଘନସୁନ୍ଦର ବାୟୁଗୁରୁ ସହିତ ଶ୍ରୀ କମଳନାଭ ନାରାୟଣ ଦେବ ସେଠାରେ ପ୍ରବେଶ ହେଲେ । ଦୌଣ୍ଡିବର ନାସୁର ଏହି ବଳପୁରଙ୍କ ସହିତ ମିଷ୍ଟାଳାପ କରି ଏହାଙ୍କ ନିର୍ଦ୍ଦିଷ୍ଟ ବଙ୍ଗଳାରେ ଏହାଙ୍କୁ ଛାଡ଼ଦେବାଲାଗି ଶଙ୍କରପନ୍ତ ପିଲ୍ଲେଙ୍କୁ ରାଜା ମହୋଦୟଙ୍କ ସହିତ ଯିବାକୁ ଆଦେଶ ପ୍ରଦାନ କରନ୍ତେ ରାଜକୁମାର ଏହି ଅପୂର୍ବ ମହିଳାର ବୃତ୍ତାନ୍ତ ଶ୍ରବଣ କରିବାକୁ କିଞ୍ଚିତ୍ କାଳ ସେଠାରେ ଅପେକ୍ଷା କଲେ । ଏଣେ କଳାବନ୍ତୀଙ୍କ ସହଚରୀ ଇନ୍ଦୁମତୀଙ୍କୁ ଶ୍ରୀ ଘନସୁନ୍ଦର ବାୟୁଗୁରୁ ପ୍ରସ୍ତାବକରତଃ ପଚାରିଲେ ।

ବାୟୁଗୁରୁ—ଦେବି ! ଆପଣଙ୍କ ନାମ କଣ ?

ଇନ୍ଦୁ—ମହାଶୟ ! ମୋ ନାମ ଇନ୍ଦୁମତୀ ।

ବାୟୁଗୁରୁ—(କଳାବନ୍ତୀ ପ୍ରତି ଅଙ୍ଗୁଳି ଦେଖାଇ)

ଏହି ଅବନୀ ଅତୁଳନୀୟା ସୁନ୍ଦରୀର ନାମ ଆପଣ ଜାଣିଥିଲେ ଦୟାପୂର୍ବକ କହିବା ହେଉ ।

ଇନ୍ଦୁ—ଏହାଙ୍କ ନାମ କଳାବନ୍ତୀ । ଏ ଦେଶ ପର୍ଯ୍ୟଟନ କରିବାଲାଗି ବାହାରି ଅଛନ୍ତି । ମୁଁ ଏହାଙ୍କର ସହଚରୀ ଅଟେ । କଳାବନ୍ତୀ ନାମ ଶ୍ରବଣ କଲା ମାତ୍ରକେ ବାୟୁଗୁରୁ ମନେ ମନେ ବିଚାର କଲେ ।—"ଏହି ପରମସୁନ୍ଦରୀ ଇଂରେଜୀ ଓ ସଂସ୍କୃତ ବିଦ୍ୟାରେ ପାରଦର୍ଶିତା ଲାଭ କରି ଉପଯୁକ୍ତ ପାତ୍ରରେ ବିବାହ ହେବାକୁ ଦେଶ ପର୍ଯ୍ୟଟନ କରୁଅଛନ୍ତି । ଏହା ମୁଁ ଦୈନିକ ଓ ସାପ୍ତାହିକ ସମ୍ବାଦପତ୍ର-ମାନଙ୍କରୁ ଅବଗତ ଅଛି । ଏ ପଦ ସେହି କଳାବନ୍ତୀ ଅଟନ୍ତି ଏହାଙ୍କଠାରୁ ପଦେ ଅଧେ ଶୁଣି ଚରିତାର୍ଥ ହୁଅନ୍ତି"।

ଇତିମଧ୍ୟରେ ଶ୍ରୀ ନନ୍ଦାଗୃହୀ ବାୟୁଗୁରୁଙ୍କ ନିକଟକୁ ଯାଇ କହିଲେ ।

ନନ୍ଦାଗୃହୀ—ଆପଣ ବସାକୁ ନଯାଇ ଏଠେ କେତେ କଣ କଲ ? ରାଜକୁମାରଙ୍କ ସହିତ ଶୀଘ୍ର ବସାକୁ ଯାଆନ୍ତୁ ।

ଏହି ମହାତ୍ମାଙ୍କ କଥା ଶୁଣି ରସ୍ପଗୁରୁ ରାଜକୁମାରଙ୍କୁ କହିଲେ ।

ରସ୍ପଗୁରୁ—ଏଥର ବସାକୁ ଗଲେ ଭଲହୁଅନ୍ତା ।

ରାଜା କଳାବତୀ ପ୍ରତି ମନୋନିବିଷ୍ଟ କରି ରହିଥିଲେ ଯେ, ରସ୍ପଗୁରୁଙ୍କ କଥାରେ କର୍ଣ୍ଣପାତ କଲେନାହିଁ । ରସ୍ପଗୁରୁ ରାଜାମହୋଦୟଙ୍କ ମନ ବୁଝି ପୁନଃ ପୁନଃ କହିବାକୁ ମନ ବଳାଇଲେ ନାହିଁ । କଳାବତୀଙ୍କ ନାମ ଧାମ ସମସ୍ତ ବୁଝି ଶ୍ରୀ ଗୌରୀଶ୍ୱର ନାୟକ ତାହାଙ୍କୁ ସଭା ମଣ୍ଡପର ସମୀପରେ ରହିବାକୁ ପ୍ରାର୍ଥନା କଲେ । କଳାବତୀ ତାହାଙ୍କ ପ୍ରାର୍ଥନାରେ ସମ୍ମତିପ୍ରଦାନ କରି ନିଜ ସଖୀ ଇନ୍ଦୁମତୀଙ୍କସହ ଗାଡ଼ିରେ ବସାକୁ ଗମନ କଲେ ଏଣେ କମଳନାଭ ଦେବ, ରସ୍ପଗୁରୁ ଓ ଶ୍ରୀ ବଶେଶ୍ୱର ପିଲ୍ଲେ ଗୋଟିଏ ଗାଡ଼ିରେ ବସି ପୁରୁଷବାଗ୍ ଆଡ଼େ ଗମନ କଲେ । ରାଜକୁମାର ବସାରେ ଉପସ୍ଥିତ ହୁଅନ୍ତେ ପ୍ରସଙ୍ଗବଶତଃ ରସ୍ପଗୁରୁଙ୍କୁ ପଚାରିଲେ ।

ରାଜା—ଆପଣ କଳାବତୀଙ୍କୁ ଜାଣନ୍ତି ?

ରସ୍ପଗୁରୁ—କଳାବତୀ ନାମ୍ନୀ ଜଣେ ପରମସୁନ୍ଦରୀ ବାଳା ସଂସ୍କୃତ ଓ ଇଂରାଜୀ ଭାଷାରେ ପାରଦର୍ଶିତା ଲାଭକରି ଉପଯୁକ୍ତ ପାତ୍ରରେ ବିବାହ ଦେବାଲାଗି ଦେଶ ପର୍ଯ୍ୟଟନ କରୁଅଛନ୍ତି । ଏହା ସମ୍ବାଦ ପତ୍ରିକାରୁ ଅବଗତ ଅଛୁଁ । ଏହି ଏକା ସେହି ପରମସୁନ୍ଦରୀ ବୋଲି ଭାବନା କରୁଁ ।

୧୮୯୪ ସାଲ ଡିସେମ୍ବର ମାସର ତା ୨୬ ରିଖରେ ମହାଜାତୀୟ ସମିତିର ଅଧିବେଶନ । ଉକ୍ତ ସଭାରେ ଅଧିପତି ଆଲଫ୍ରେଡ୍ ଓେବ୍ ସେହିଦିନ ଘ ୧୧ ଟା ସମୟରେ ସଭାରମ୍ଭ କଲେ । ସେ ସ୍ଥାନରେ ଅଙ୍ଗ, ବଙ୍ଗ, କଳିଙ୍ଗ, ମଦ୍ର, ମାଳବ, କର୍ଣ୍ଣାଟ, ଚୋଳ, ପାଣ୍ଡ୍ୟ ପ୍ରଭୃତି ଦେଶମାନଙ୍କର ଭଦ୍ରବ୍ୟକ୍ତିମାନେ ଉପସ୍ଥିତ ଥିଲେ । ଇତିମଧ୍ୟରେ ସଭାପତି ବକ୍ତୃତା ପ୍ରଦାନ କଲେ । ତାହା ଅତି ସରଳ ଓ ମନୋହର ହୋଇଥିଲା । ଶେଷରେ ସଭା ବନ୍ଦହେଲା । ପରଦିବସ ସଭାରମ୍ଭ ହେଲା, ସଭାପତି ମହାଶୟ ମହାରାଜାଙ୍କ ମରଣ ସମ୍ବାଦ ଅଶ୍ରୁପୂର୍ଣ୍ଣ ନୟନରେ ପାଠ କରିବାରୁ ସଭାସଦ୍‌ଗଣ ଅତ୍ୟନ୍ତ ଦୁଃଖିତ ହେଲେ । ପରେ ତାହାଙ୍କ ମରଣ ଉପଲକ୍ଷ୍ୟରେ ସଭା ବନ୍ଦହେଲା । ସଭାରମ୍ଭ କାଳରେ ଭାରତ ଓ ଇଂଲଣ୍ଡରେ

ଏକ ସମୟରେ କଲେଜର ପରୀକ୍ଷା ଧାର୍ଯ୍ୟହେବା ଲାଗି ବାବୁ ଅମରେନ୍ଦ୍ରନାଥ ଗୋଟିଏ ପ୍ରକାଣ୍ଡ ବକ୍ତୃତା ପ୍ରଦାନ କଲେ । ଏ ଜଣେ ଭାରତାଭିମାନୀ । ଏହାଙ୍କର ବକ୍ତୃତା ପରେ ସଭ୍ୟବୃନ୍ଦ ସରଳଭାବରେ ଧନ୍ୟବାଦ ଦେଲେ । ନାର୍ଟନ ସାହେବ ଯେତେବେଳେ ବକ୍ତୃତା ଦେବାକୁ ମଞ୍ଚ ଉପରେ ଦଣ୍ଡାୟମାନ ହେଲେ, ଲୋକେ ତାହାଙ୍କୁ ଦେଖି ଆନନ୍ଦସାଗରରେ ଭାସମାନ । ଇତ୍ୟବସରରେ ମିସ୍ ମୁଲର ନାମ୍ନୀ ଜଣେ ମହିଳା ମଞ୍ଚ ଉପରେ ଥାଇ କହିଲେ ।

ମିସ୍ ମୁଲର—ଏହି ସାହେବ ପରସ୍ତ୍ରୀର ମାନଭଙ୍ଗ କାର୍ଯ୍ୟ କରିଅଛନ୍ତି । ଏହା ଲୋକ ଶଠ । ଏହିପରି ବ୍ୟକ୍ତି ଏଠାରେ ସ୍ଥାନପାଇବା ଯୋଗ୍ୟ ନୁହେ ।

ମାତ୍ର ଲୋକେ ମିସ୍ ମୁଲରଙ୍କ କଥାରେ କର୍ଣ୍ଣପାତ ନକରି ନାର୍ଟନଙ୍କୁ ବକ୍ତୃତା ପ୍ରଦାନ କରିବାକୁ ଉତ୍ସାହ ପ୍ରଦାନ କଲେ । ଲୋକଙ୍କର ରୁଚି ଜାଣି ସଭାପତି ମଧ୍ୟ ନାର୍ଟନଙ୍କୁ ସଭାରେ କହିବାକୁ ଆଦେଶ ଦେଲେ । ସେହି ସମୟରେ ମିସ୍ ମୁଲର ଦୁର୍ଗାଚରଣ ବାନାର୍ଜି ଆଉ କେତେ ଭଦ୍ରବ୍ୟକ୍ତିମାନେ ସଭାରୁ ବାହାରି ଗଲେ । ଏହି ସକଳ ସମାଚାର ଇନ୍ଦ୍ରମଣି ବସୁଗୁରୁଙ୍କୁ ପତ୍ରରେ ଯେ ସମସ୍ତ ତାହାଙ୍କୁ ବୁଝାଇ ଦେଉଥିଲେ ।



## ଏକାଦଶ ପରିଚ୍ଛେଦ

### ଶିକ୍ଷିତା ରମଣୀର ଅପୂର୍ବ ଜିଜ୍ଞାସା

ସେହିଦିନ ସଭା ବନ୍ଦହେଲା ବାଦ, ବସ୍ତୁଗୁରୁ ଓ ଇନ୍ଦୁମତୀ ଗୋଟିଏ ଗାଡ଼ିରେ ବସି କଥୋପକଥନପୂର୍ବକ ସାମୁଦ୍ରିକସମୀରଣ ସେବନ କରିବା ନିମନ୍ତେ ସମୁଦ୍ରତୀରକୁ ଯାଉଅଛନ୍ତି; ଇତିମଧ୍ୟରେ ଶଶିକଳା ନାମ୍ନୀ ଜଣେ ଶିକ୍ଷିତା ମହିଳା ଇନ୍ଦୁମତୀ ପ୍ରତି ଏକାଗ୍ର ନୟନରେ ଚାହିଁ ସେ ଦୁହିଁଙ୍କ ଗାଡ଼ି ପଛରେ ଆପଣା ଗାଡ଼ିକୁ ଫେରାଇ ଚଳାଇଲେ। କେତେ ଦୂର ଗଲାବାଦ ସମୁଦ୍ରତୀରରେ ଏକାନ୍ତ ସ୍ଥାନରେ ବସ୍ତୁଗୁରୁ ଗାଡ଼ି ରଖି ଇନ୍ଦୁମତୀଙ୍କ ସହିତ ତଳକୁ ଓହ୍ଲାଇଲେ। ଅଳ୍ପ କାଳ ଏଣେ ତେଣେ ଭ୍ରମଣ କରି ସେହି ସ୍ଥାନରେ ଥିବା ଗୋଟିଏ ସୋପାନରେ ଦୁହେଁ ବସି ମାତୃଭାଷାରେ କଥୋପକଥନ କରିବାର ଶଶିକଳା ଦୂରରୁ ଶୁଣି ମନେ ମନେ ବିଚାର କଲେ।

ଶଶୀ—ଏହି ଭାଷା ଓଡ଼ିଆ ଭାଷାପରି ଶୁଭୁଅଛି। ଶୁଣିଥାଏ ଭାରତୀୟମାନଙ୍କରେ ଓଡ଼ିଆମାନେ ଧନ, ବିଦ୍ୟା ଓ ସଭ୍ୟତାରେ ନିକୃଷ୍ଟ। ଏ ଦୁହିଙ୍କଠାରେ ଓଡ଼ିଆମାନଙ୍କ ଚିହ୍ନ କିଛିହିଁ ଲକ୍ଷିତ ହେଉନାହିଁ। ଏମାନେ ଇଂଲଣ୍ଡର ସଭ୍ୟଶ୍ରେଣୀଭୁକ୍ତ ବ୍ୟକ୍ତିମାନଙ୍କପରି ଆଚରଣ କରନ୍ତି। ଯାହାହେଉ ଏମାନଙ୍କର ନାମ ଧାମ ପଚାରିବି।

ଏହା ସ୍ଥିର କରି ସେମାନଙ୍କ ନିକଟକୁ ଶଶିକଳା ଗମନ କଲେ। ଶଶିକଳାଙ୍କୁ ବସ୍ତୁଗୁରୁ ଦେଖି ପଚାରିଲେ।

ବସ୍ତୁ—(What brought you here, Madam ?) ଆପଣ କି ହେତୁରୁ ଏଠାକୁ ଆସିଲ ?

ଶଶୀ—( Gentleman, come to introduce myself to you and your Miss )

ମହାଶୟ, ତୁମ୍ଭଙ୍କୁ ଏବଂ ତୁମ୍ଭ ସ୍ତ୍ରୀଙ୍କୁ ପରିଚୟ ଦେବାଲାଗି ଏଠାକୁ ଆସିଅଛୁ ।

ରାଜ—(She is not my wife replied Rajaguru with laughter.)

ହସି ହସି କହିଲେ 'ଏ ମହିଳା ଆମ୍ଭର ସ୍ତ୍ରୀ ନୁହନ୍ତି' ।

ଶଶିକଳା ତାହାଙ୍କ ନାମ ଧାମ ହିନ୍ଦୀ ଭାଷାରେ ପଚାରିବାରୁ ଇନ୍ଦୁମତୀ କହିଲେ ।

ଇନ୍ଦୁମତୀ—ଆମ୍ଭର ନାମ ଇନ୍ଦୁମତୀ, ଜନ୍ମସ୍ଥାନ ନାଗପୁର ଅନ୍ତର୍ଗତ ରାୟପୁର ଜିଲ୍ଲା ଅଟେ ।

ପରେ ଶଶିକଳା ରାଜଗୁରୁଙ୍କ ନାମ ଧାମ ମଧ୍ୟ ଅବଗତ କରି ସେ ଦୁହିଙ୍କଠାରୁ ବିଦାୟ ଗ୍ରହଣ କଲେ । ଶଶିକଳା ବାଟରେ ଯାଉଁ ଯାଉଁ ଜଣେ ଇଉରେପିୟାନ୍ ସିପାଇ ତାହାଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଲା । ଇତ୍ୟବସରରେ ବାରିଷ୍ଟର ମେଁ କଲ ସାହେବଙ୍କ ଗାଡି ହଠାତ୍ ସେଠାରେ ପହୁଞ୍ଚିଲା । ସିପାଇ ବାରିଷ୍ଟରଙ୍କୁ ଦେଖି ଦୂର ହୋଇଗଲା । ବାରିଷ୍ଟର ଶଶିକଳାଙ୍କୁ ଦେଖି ପଚାରିଲେ ।

ବାରିଷ୍ଟର—ତୁମ୍ଭେ କାହିଁକି ଏତେ କ୍ଳାନ୍ତ ହୋଇଅଛ ?

ଶଶି—ଆପଣ ଯଦି ହଠାତ୍ ଏଠାରେ ପହୁଞ୍ଚି ନଥାନ୍ତେ ମୋର ମାନ ମହତ୍ତ୍ୱ ଏ ସିପାଇ ହେତୁରୁ ଯାଇଥାନ୍ତା ।

ଶଶିକଳାଙ୍କ ମୁଖରୁ ଏହି ବାଣୀ ଶୁଣି ବାରିଷ୍ଟର ମନେ ମନେ ଅତି ଦୁଃଖିତ ହେଲେ । ସେଠାରୁ ଶଶିକଳା ସ୍ୱଗୃହକୁ ଗମନ କରୁଥିଲେ । ପ୍ରସଙ୍ଗବଶତଃ ଇନ୍ଦୁମତୀ ରାଜଗୁରୁଙ୍କୁ ପଚାରିଲେ ।

ଇନ୍ଦୁମତୀ—ଉତ୍କଳ ରାଜାମାନଙ୍କ ସମ୍ବନ୍ଧରେ ଆପଣଙ୍କଠାରୁ କିଛି ଶୁଣିବାକୁ ଇଚ୍ଛା କରୁଁ । ଜାଣିବା ପର୍ଯ୍ୟନ୍ତ ଦୟାପୂର୍ବକ କହିବା ହେଉନ୍ତୁ ।

ରାଜଗୁରୁ—ପ୍ରବାଳପୁରର ଅଧୀଶ୍ୱର ଶ୍ରୀ ଶିବପ୍ରତାପ ନାରାୟଣଦେବ ଅଟନ୍ତି । ଏ ମହାତ୍ମାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ ଦୁହିତା । ଏହାଙ୍କର ଦ୍ୱିତୀୟ ଓ ତୃତୀୟ ପୁତ୍ର ମାନବଲୀଳା ସମ୍ବରଣ କରିଅଛନ୍ତି ।

ପ୍ରଥମ ପୁତ୍ରଙ୍କ ନାମ ଶ୍ରୀ ତାରକନାଥ ଗୌରାଙ୍ଗ ଗଜପତି ନାରାୟଣଦେବ; ଏହାଙ୍କର ବୟସ ପ୍ରାୟ ତେଇଶି ବର୍ଷ ହେବ । ଏହି ରାଜ୍ୟ ଅନେକ ଦିନ କୋର୍ଟଅଫ୍ ଓ୍ୱାର୍ଡସ୍‌ଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ସଂପ୍ରତି ପିତାଙ୍କ ଆଦେଶାନୁସାରେ ଏ ମହାତ୍ମାଙ୍କୁ ଉକ୍ତ ରାଜ୍ୟ କୋର୍ଟଅଫ୍ ଓ୍ୱାର୍ଡସ୍ ପ୍ରଦାନ କରିଅଛନ୍ତି । ଏ ରାଜପୁତ୍ର ପାଶ୍ଚାତ୍ୟ ଶିକ୍ଷା ଲାଭ କରିଅଛନ୍ତି । ଏ ଅତି ସୁନ୍ଦର, ସବଳକାୟ, ଚତୁର ଓ ନୃତ୍ୟପ୍ରିୟ ଅଟନ୍ତି । ଏହାଙ୍କର ଶିକ୍ଷକ ଜଣେ ଇଂରେଜ ବ୍ୟକ୍ତି । ଏବେ ଏହି ବ୍ୟକ୍ତି ରାଜାଙ୍କ ଏକାନ୍ତରୂପେ ନିଯୁକ୍ତ ଅଛନ୍ତି । ରାଜା ମହାଶୟ ପ୍ରଥମେ ଜୟପୁର ରାଜା ଜାନକୀନାଥ ଦେବଙ୍କ ଭ୍ରାତୃଷ୍ପୁତ୍ରୀଙ୍କୁ ବିବାହ ହୋଇଥିଲେ । ଅଳ୍ପକାଳ ପରେ ସେ ସ୍ୱର୍ଗାରୋହଣ କଲେ । ବିଜିଆନଗରରେ ଜଣେ ସାମନ୍ତଙ୍କ ଦୁହିତାଙ୍କୁ ବିବାହ ହୋଇଅଛନ୍ତି । ଏହାଙ୍କର କନିଷ୍ଠ ଭାଇ ଶ୍ରୀ କମଳନାଭ ନାରାୟଣ ଦେବ ଅଟନ୍ତି । ଏ ମହାତ୍ମା ଇଂରେଜ ବିଦ୍ୟାରେ ନିପୁଣ, ଚତୁର, ବୁଦ୍ଧିମାନ୍, ଦେଶହିତକର କାର୍ଯ୍ୟରେ ସର୍ବଦା ତତ୍ପର । ଏହି ରାଜପୁତ୍ର ତୁମ୍ଭ କଳାବତୀଙ୍କ ସହିତ ଭ୍ରମଣ କରୁଅଛନ୍ତି । ଏ ଅଦ୍ୟାପି ବିବାହ କରିନାହାନ୍ତି । ଏହାଙ୍କ ଜନନୀ ଏ ପୁତ୍ର ନିମନ୍ତେ ଉପଯୁକ୍ତ କନ୍ୟା ଅନ୍ୱେଷଣ କରୁଅଛନ୍ତି ।

ମହେନ୍ଦ୍ର ରାଜ୍ୟର ଅଧୀଶ୍ୱର ଶ୍ରୀ ରାଜମଣିଦେବ ଥିଲେ । ସେ କିଛିଦିନ ହେଲା ମାନବଲୀଳା ସମ୍ବରଣ କରିଅଛନ୍ତି । ତାହାଙ୍କର ପୁତ୍ର ରାଜଶାସନ-ଦଣ୍ଡ ପରିଚାଳନ କରନ୍ତି । ଏ ରାଜପୁତ୍ର ସଂସ୍କୃତ ଭଲରୂପେ ପଢିଅଛନ୍ତି । ଚତୁର ଓ ବୁଦ୍ଧିମାନ୍ ଅଟନ୍ତି ।

ପାଦଶାୟୁ ପ୍ରଦେଶର ନରପତି ସୀତାନାଥ ଶ୍ରେଷ୍ଠବୟ । ଏ ମହାତ୍ମା ଇଂରେଜ ବିଦ୍ୟା ଭଲରୂପେ ପଢିଅଛନ୍ତି । ଏହାଙ୍କ ବୁଦ୍ଧିମାନ୍ ମନ୍ତ୍ରୀ ତ୍ରିବାଲପୁରର ମହାରାଜ ଆପଣାର କନିଷ୍ଠ ଦୁହିତାଙ୍କୁ ଏହାଙ୍କ ସହିତ ବିବାହ କରାଇ ଅଛନ୍ତି । ଦୁର୍ଦ୍ଦୈବବଶତଃ ଏ ରାଜକୁମାର ସର୍ବସ୍ୱ ହରାଇ ଅତି କଷ୍ଟରେ କାଳ କାଟୁଅଛନ୍ତି ।

ଅଙ୍ଗନ ରାଜ୍ୟର ରାଜା ବାର୍ଦ୍ଧକ୍ୟ ଅବସ୍ଥାରେ ଉପନୀତ ହୋଇଅଛନ୍ତି । ଏ ବ୍ୟକ୍ତି ଅତ୍ୟନ୍ତ କୃପଣ ଅଟନ୍ତି; ଏହାଙ୍କର କୁଟୁମ୍ବ ଅତି ବିଶାଳ । ଏ କୁଟୁମ୍ବର ପ୍ରତ୍ୟେକଙ୍କୁ ଏକ ଏକ ଗ୍ରାମ ପ୍ରଦାନ କରିଅଛନ୍ତି । ତଦ୍ଦ୍ୱାରା ସେମାନେ ଜୀବିକା ନିର୍ବାହ କରନ୍ତି ।

ଏହି ରାଜ୍ୟର ନିକଟରେ ଚନ୍ଦ୍ରପୁର କଟକ ଅଛି । ଚନ୍ଦ୍ରପୁର ରାଜ୍ୟର ଅଧୀଶ୍ୱର ଧନେନ୍ଦ୍ରଦେବ, ଏହାଙ୍କର ଆଉ ତିନିଗୋଟି ଭାଇ ଅଛନ୍ତି । ତୃତୀୟ ଭାଇଙ୍କ ଉପାଧି-ନାମ ଆଠଗଡ଼; ଏହି ମହାତ୍ମା ରାଜ୍ୟପାଳନ କରନ୍ତି ବୋଲି ଜନରବ ଅଛି । ଏହି ବ୍ୟକ୍ତି ସାଧାରଣତଃ ବୁଦ୍ଧିମାନ୍ । କନିଷ୍ଠ ଭାଇଙ୍କ ନାମ ଜଗନ୍ନାଥଦେବ, ଏ ବ୍ୟକ୍ତି ଓଡ଼ିଆ ଭାଷାରେ କିଛି ପରିଶ୍ରମ କରିଅଛନ୍ତି । ଧନେନ୍ଦ୍ରଦେବ ଚନ୍ଦ୍ରପୁର ରାଜ୍ୟର ରାଜା ହେବାନିମନ୍ତେ ପ୍ରବାଳପୁର ମହାରାଜ ତାହାଙ୍କ ଜ୍ୟେଷ୍ଠ-ଦୁହିତାଙ୍କ ପାଣିଗ୍ରହଣ କରାଇଅଛନ୍ତି । ଧନେନ୍ଦ୍ରଦେବଙ୍କ ପିତା ବିଦ୍ୱାନ୍ ଓ ବୁଦ୍ଧିମାନ୍ ଥିଲେ । ସେ ଶକୁନ୍ତି ରମଣିକା ନାମକ ଗ୍ରନ୍ଥ ରଚନା କରିଅଛନ୍ତି । ଏହି ମହାତ୍ମା ମଧ୍ୟ ପ୍ରବାଳପୁର ମହାରାଜ ଶ୍ରୀ ଶିବପ୍ରତାପ ଗଜପତି ନାରାୟଣ ଦେବଙ୍କ ଭଗିନୀଙ୍କ ସହିତ ବିବାହ କରିଥିଲେ ।

ଏହି ରାଜ୍ୟର ନିକଟରେ ଗୁନୁପୁର ରାଜ୍ୟ । ଏହାର ଅଧୀଶ୍ୱର ଶ୍ରୀପତି ଦେବ । ଏହି ମହାତ୍ମା ସର୍ବଦା ଈଶ୍ୱର ଭକ୍ତିରେ ତତ୍ପର, ଭଜନ-ସ୍ମରଣରେ କାଳଯାପନ କରନ୍ତି । ସମସ୍ତ ସମୟରେ ରାଜ୍ୟଶାସନ କରନ୍ତି । ପ୍ରଜାବତ୍ସଳ ଓ ଧାର୍ମିକ ଅଟନ୍ତି । ଏହାଙ୍କର ତିନିଜଣ ପୁତ୍ର । ଜ୍ୟେଷ୍ଠ ପୁତ୍ରଙ୍କୁ ପୂର୍ବ ରାଜାଙ୍କୁ ଦତ୍ତ କରିଥିଲେ । ସେ ପୂର୍ବ ସିଂହାସନରେ କେତେକାଳ ଉପବିଷ୍ଟ ହୋଇ ରାଜ୍ୟଶାସନ କରିଥିଲେ । କ୍ରୋଧର ପରବଶ ହୋଇ ବୃଥାରେ ଜଣେ ସନ୍ନ୍ୟାସୀଙ୍କୁ ପ୍ରାଣଦଣ୍ଡ କରିବାରୁ କାରାଦଣ୍ଡ ପ୍ରାପ୍ତ ହୋଇଅଛନ୍ତି । ଦ୍ୱିତୀୟ ପୁତ୍ର ରାଜକିଶୋର ଦେବ । ଲକ୍ଷ୍ମୀପୁର ରାଜା ନିଃସନ୍ତାନ ହେବାରୁ ଏହି ରାଜକିଶୋର ଦେବଙ୍କୁ ଦତ୍ତକ କରିଥିଲେ । ରାଜକିଶୋର ଦେବ ଅନେକ ଦିନ ଇଂରାଜୀ ବିଦ୍ୟା ଶିକ୍ଷା କଲେ । ମାତ୍ର ତାହାଙ୍କର କିଛି ବିଦ୍ୟା ହେଲନାହିଁ । ଏହି ମହାତ୍ମା ଦେଶହିତକର କାର୍ଯ୍ୟରେ ଗୋଟିଏ ପଇସା ହେଲେ ବ୍ୟୟ କରିପାରି ନାହାନ୍ତି । କନିଷ୍ଠ ପୁତ୍ରଙ୍କ ନାମ ଶ୍ରୀ ଦାମୋଦର ଦେବ । ଏ ନାବାଳକ ଅଟନ୍ତି । ଏହାଙ୍କର ବିଦ୍ୟା ଓ ବୁଦ୍ଧି ଭଲରୂପେ ପ୍ରସ୍ଫୁଟିତ ହୋଇନାହିଁ । କାଳେ ଏ ମହାତ୍ମାଙ୍କର ବିଷୟ ଜଣାଯିବ ।

ଖେଡ଼ଗଡ଼ ରାଜ୍ୟର ରାଜା ରାଜେନ୍ଦ୍ରଦେବଙ୍କ ଦ୍ୱିତୀୟ ଭାଇ ଅଟନ୍ତି । ଏ ମହାତ୍ମା ଇଂରାଜୀ ବିଦ୍ୟାରେ ଭଲରୂପେ ପରିଶ୍ରମ କରିଥିଲେ ।

ସେତେବେଳେ ରାଜ୍ୟଭାର ଗ୍ରହଣ କଲେ, ପ୍ରଜାପୀଡ଼କ ହୋଇ ରାଜ୍ୟ ଶାସନ କଲେ । ଅନେକ ଧନ ସଞ୍ଚୟ କରିଥିଲେ ମାତ୍ର ସ୍ୱଭାବ ବଡ଼ ନିଷ୍ଠୁର ଥିଲା ବୋଲି ଜନରବ ଅଛି ।

ସାରଙ୍ଗପୁର, ରଙ୍ଗମହାଲ, ବଡ଼ଭୂମି ଓ ଖଇରପୁର ପ୍ରଭୃତି ରାଜ୍ୟମାନେ ଅତି କ୍ଷୁଦ୍ର । ଅତଏବ ଏମାନଙ୍କ ବିଷୟରେ ଭୁମିଠାରେ ଜଣାଇବାକୁ ଅନାବଶ୍ୟକ ।

ସ୍କନ୍ଦରଣଙ୍କର ମହାରାଜ ଶ୍ରୀଲ୍ଲାଦ୍ରି ଓ କୁଜାଚଳ ଦୁର୍ଗର ଅଧୀଶ୍ୱର ଅଟନ୍ତି । ଏହି ମହାତ୍ମା ଇଂରାଜୀ ବିଦ୍ୟା ଭଲରୂପେ ଶିକ୍ଷାଲାଭ କରିଅଛନ୍ତି । ଉତ୍କଳପ୍ରିୟ, ପ୍ରଜାବତ୍ସଳ ଦେଶ ପର୍ଯ୍ୟଟନ କରି ସଭ୍ୟ ମଣ୍ଡଳୀରେ ପରିଚୟ ଦେଇଅଛନ୍ତି । ବିବେକଚନ୍ଦ୍ର ମହାପାତ୍ର ହସ୍ତରେ ରାଜ୍ୟଶାସନ ଭାର ଦିଆଯାଇଥିବା ଯୋଗୁଁ ଲୋକେ ଏହାଙ୍କୁ ନିନ୍ଦା କରୁଥିଲେ; କିନ୍ତୁ ରାଜାବାହାଦୁର ଲୋକନିନ୍ଦା ସହ୍ୟ କରି ନପାରି ବିବେକଚନ୍ଦ୍ର ମହାପାତ୍ରଙ୍କୁ ଉକ୍ତ କାର୍ଯ୍ୟରୁ ତଡ଼ିଦେଲେ ଏବଂ ରାଜ୍ୟଭାର ଜଣେ ଇଂରାଜ ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କଲେ । କେତେ କାଳ ପରେ ଏହାଙ୍କୁ ତଡ଼ିଦେଇ ଆଉ ଜଣେ ଇଂରାଜ ବ୍ୟକ୍ତିଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କଲେ । ଏଥିରୁ ପ୍ରତୀତ ହୁଏ ଯେ, ଏ ମହାତ୍ମା ସ୍ୱତନ୍ତ୍ର କାହାରି ବଶ ନୁହନ୍ତି । ରାଜା ବାହାଦୁର ଅସାଧାରଣ ବ୍ୟୟ କରିବା ଯୋଗୁଁ କାଳେ ଋଣଗ୍ରସ୍ତ ହେବା ସମ୍ଭାବନା । ଏହି ମହାତ୍ମା ନୀଳକଣ୍ଠଭଞ୍ଜ ରାଜାଙ୍କ ଭଗିନୀଙ୍କ ପାଣିଗ୍ରହଣ କରିଅଛନ୍ତି ।

ଇନ୍ଦୁମତୀ—ରାମ୍ଭଗୁରୁ ! ଏହି ଉତ୍କଳ ରାଜପୁତ୍ରମାନଙ୍କର କଥା ଆପଣଙ୍କଠାରୁ ଶୁଣି ଚରିତାର୍ଥ ହେଲି । ଦେଖ ! ଜଣେ ମହାର୍ଘପରିଚ୍ଛଦଧାରୀ ରାଜପୁତ୍ର ଆମ୍ଭ ଆଡ଼େ ଆସୁଅଛନ୍ତି । ପ୍ରତୀତ ହୁଏ ଏ ଜଣେ ଓଡ଼ିଆ ରାଜା । ଏହାଙ୍କ ବିଷୟରେ ଆପଣ କିଛି ଜାଣନ୍ତି ?

ରାମ୍ଭଗୁରୁ—ଇନ୍ଦୁମତି ! ଏ ଧରଣୀକୋଟ ରାଜାଙ୍କ ଦତ୍ତକ ପୁତ୍ର, ଏହାଙ୍କ ନାମ କାମମୋହନ ସିଂହ । ଏ ନାବାଳକ ଅଟନ୍ତି । ଆଜକୁ ପ୍ରାୟ ଚାରି ବର୍ଷ ହେଲା ଏହି ସ୍ଥାନରେ ରହି ବିଦ୍ୟାଭ୍ୟାସ କରୁଅଛନ୍ତି । ଏହାଙ୍କ ବୟସ ପ୍ରାୟ କୋଡ଼ିଏ ବର୍ଷ ହେବ ।



# ଦ୍ୱାଦଶ ପରିଚ୍ଛେଦ

## ଶେଷ ଧର୍ମର ପରିଚୟ

ବାଟରେ ଶ୍ୱେତାଙ୍ଗୀ ସନ୍ନ୍ୟାସିନୀଙ୍କୁ ଛିଡ଼ାକଲା ଦେଖି କହିଲେ, "ଆପଣ ଏକାକିନୀ ଏହି ସମୁଦ୍ର ଉପକୂଳ ଅଞ୍ଚଳେ ସାୟଂକାଳ ସମୟରେ କାହିଁକି ଯାଉଅଛନ୍ତି ? ସିପାହିମାନେ ଆପଣଙ୍କୁ ବାଟରେ ଆକ୍ରମଣ କରିବେ" । ଏହା ଶୁଣି ଭକ୍ତିମଣି ତତ୍‌କ୍ଷଣାତ୍ ଗାଡ଼ି ଫେରାଇ ଶଶିକଳାଙ୍କ ସହିତ କଥୋପକଥନ କରି ବସାକୁ ବାହାରିଲେ ।

ଏଣେ କଳାବତୀ ଓ ଶ୍ରୀ କମଳନାଭ ନାରାୟଣ ଦେବ ସାୟଂକାଳ ସମୟରେ ଏଣେତେଣେ କିଛିକ୍ଷଣ କାଳ ଭ୍ରମଣକରି କଳାବତୀଙ୍କ ବସାରେ ଦୁହେଁ ଉପସ୍ଥିତ ହେବା ସମୟରେ ବାବୁ, ବାହାଦୁରଙ୍କ, ଗୁରୁଚରଣ ବାନାର୍ଜି ଓ ଅମରେନ୍ଦ୍ରନାଥ କଳାବତୀଙ୍କୁ ଅପେକ୍ଷା କରି ତାହାଙ୍କ ବସାରେ ଜଗିଅଛନ୍ତି । ଇତ୍ୟବସରରେ ବିଷ୍ଣୁଗୁରୁ ଓ ଇନ୍ଦୁମଣି ସେଠାରେ ପ୍ରବେଶ ହେଲେ । ସମସ୍ତେ ଏକତ୍ର ହୋଇ 'ସୀମାନ୍ତ ଯୁଦ୍ଧ ବିଷୟରେ ଦାୟୀ ଇଂଲଣ୍ଡ କି ଭାରତ' ଏହାଦେଇ ତର୍କ ବିତର୍କ କରିବାକୁ ଆରମ୍ଭ କଲେ । କେତେକାଳ ଏପରି ବାଦାନୁବାଦ କରି ପରେ କଳାବତୀଙ୍କ ଅଭିମତ ପଚାରିବାରୁ ସେ କହିଲେ ।

କଳାବତୀ—ଆମ୍ଭେମାନେ ଶ୍ରୀ ମତୀ ଭିକ୍ଟୋରିଆଙ୍କର ପ୍ରଜାବର୍ଗ ଅଟୁଁ । ତାହାଙ୍କ ବିପଦ ସମୟରେ ଆମ୍ଭମାନଙ୍କର ପ୍ରାଣପଣରେ ତାହାଙ୍କ ସାହାଯ୍ୟ ପ୍ରଦାନ କରିବା ଉଚିତ । ଅତଏବ ସୀମାନ୍ତ ଯୁଦ୍ଧ ବିଷୟରେ ଇଂଲଣ୍ଡ ଓ ଭାରତ ଦୁହେଁ ସମାନରୂପେ ଦାୟୀ ଅଟନ୍ତି । ଏଥି ନିମିତ୍ତରେ ଯେତେ ଦ୍ରବ୍ୟ ଲାଗିବ ଇଂଲଣ୍ଡ ଓ ଭାରତ ସମଭାଗରେ ଦେବାକୁ ହେବ ।

ଏହି ସାରୋକ୍ତି କଳାବତୀଙ୍କ ମୁଖରୁ ଶୁଣି ସମସ୍ତେ ସନ୍ତୁଷ୍ଟ ହେଲେ, ପରେ ନିଜ ନିଜ ଗୃହକୁ ବାହାରି ଗଲେ । ବସୁଗୁରୁ ଓ ଶ୍ରୀ କମଳନାଭ ନାରାୟଣଦେବ ପଥରେ ଯାଉ ଯାଉ କମଳନାଭ ନାରାୟଣଦେବ ବସୁଗୁରୁଙ୍କୁ ପଚାରିଲେ ।

କମଳନାଭ—ଆପଣ ଏତେ କାଳଯାଏ ଇନ୍ଦୁମତୀଙ୍କ ସହିତ ଭ୍ରମଣକରି ପଥରେ କି ବିଷୟ ଘେନି କଥୋପକଥନ କରୁଥିଲେ ?

ବସୁଗୁରୁ—ଆମ୍ଭେ ଦୁହେଁ ସମୁଦ୍ର ଉପକୂଳକୁ ଯାଇଥିଲୁଁ । ସେ ଉତ୍କଳ ରାଜାମାନଙ୍କର ପରିଚୟ ଜିଜ୍ଞାସା କଲେ । ମୋତେ ଜଣାଥିଲାପରି ସେମାନଙ୍କ ବିଷୟରେ ମୁଁ ତାହାଙ୍କୁ କହିଲି । ମୋଠାରୁ ସେମାନଙ୍କର କଥା ଶ୍ରବଣ କରି ଆପଣଙ୍କ ଗୁଣକୁ ସେ ଭୂରି ଭୂରି ପ୍ରଶଂସା କଲେ । ତାହାଙ୍କ କଥାରୁ ମୁଁ ଜାଣିପାରିଲି ଯେ, କଳାବତୀଙ୍କୁ ଉପଯୁକ୍ତ ପାତ୍ରରେ ବିବାହ କରାଇବେ ।

କମଳନାଭ ନାରାୟଣଦେବ ଏହା ଶ୍ରବଣ କରି ମନେ ମନେ ଚିନ୍ତାକଲେ ଭାଗ୍ୟଥିଲେ ଏତାଦୃଶ ଯୁବତୀରତ୍ନର ପାଣିଗ୍ରହଣ ଲାଭ ହେବ ।

ପରଦିନ ପ୍ରାତଃକାଳ ଘ ୭ ଟା ସମୟରେ ଭିକ୍ଟୋରିଆ ହଲରେ ଗୋଟିଏ ବୃହତ୍ ଅଧିବେଶନ ହୋଇଥିଲା । ସେଠାରେ କଳାବତୀ ଓ ଇନ୍ଦୁମତୀ ଦୁହେଁ ଉପସ୍ଥିତ ଥିଲେ । ଉକ୍ତ ଅଧିବେଶନରେ ଭକ୍ତିମତୀ ନାମ୍ନୀ ଜଣେ ଇଂରାଜ ମହିଳା ଯୋଗଶାସ୍ତ୍ରରେ ଭାରତୀୟମାନଙ୍କ ଦୂରଦର୍ଶିତା ଓ ଶ୍ରେଷ୍ଠତା ବୁଝାଇ ଉପସଂହାରରେ ଏହିପରି କହିଲେ । "ଭାରତୀୟମାନେ ଈଶ୍ୱରଙ୍କୁ ଜାଣିବା ନିମନ୍ତେ ଯେତେଦୂର ପରିଶ୍ରମ କରି ଅଛନ୍ତି ଆଉ କୌଣସି ଜାତିୟ ଲୋକେ ସେତେଦୂର ପରିଶ୍ରମ କରି ନାହାନ୍ତି । ଏହା କି ସଭ୍ୟତାର ପରିଚୟ ଦେଉଅଛି ନା, ଯେଉଁମାନେ ମଦ୍ୟପାୟୀ, ପରଦାରାପହରଣରେ ସର୍ବଦା ରତ, ପରଧନ ଲୁଣ୍ଠନରେ ଅଗ୍ରସର ହୁଅନ୍ତି, ଏବଂ ପରକୁ ପୀଡ଼ାଦେବାରେ କେବେମାତ୍ର କୁଣ୍ଠିତ

ହୁଅନ୍ତି ନାହିଁ, ସେମାନେ ସଭ୍ୟ ? ଏହି କଥା ଭଲରୂପେ ବିଚାର କରନ୍ତୁ । ଆଜିକାଲି ନୈତିକ ଚରିତ୍ରଶାଳୀ ବ୍ୟକ୍ତିମାନେ ସଭ୍ୟ ସୃଷ୍ଟିରେ ଗଣନା କରାଯାଆନ୍ତି ନାହିଁ । ମାତ୍ର ଯେଉଁମାନେ ଈଶ୍ୱର ଚିନ୍ତାରୁ ବଞ୍ଚିତ ଓ ସର୍ବଦା ମାଦକଦ୍ରବ୍ୟ ସେବନରେ ରତ ସେମାନେ ସଭ୍ୟ ସୃଷ୍ଟିର ଉଚ୍ଚ ସୋପାନରେ ଅଧିରୋହଣ କରୁଅଛନ୍ତି । ଧନ୍ୟ କାଳର ମହିମା" ! ପରେ ସଭା ବନ୍ଦ ହେଲା । ସେହିଦିନ କଳାବତୀ ମାନ୍ଦ୍ରାଜର ଭଦ୍ରମଣ୍ଡଳୀରେ ପରିଚୟ ଦେଇ ତାହାଙ୍କର ବସା ନିକଟସ୍ଥ ବୋମ୍ବେ ଏବଂ ବଙ୍ଗଳାଦେଶରୁ ଆଗତ ଭଦ୍ରଲୋକଙ୍କ ସହିତ ମିଷ୍ଟାଳାପରେ ଦିନର ଶେଷଭାଗ ଯାପନ କଲେ । ପରଦିନ ପ୍ରାତଃକାଳରେ କଳାବତୀ ସହଚରୀଙ୍କ ସହିତ ରାମେଶ୍ୱର ଦର୍ଶନ କରିବାଲାଗି ମାନ୍ଦ୍ରାଜ ପରିତ୍ୟାଗ କଲେ । ଯେତେବେଳେ ପୁଣ୍ୟକ୍ଷେତ୍ରରେ ପ୍ରବେଶ ହେଲେ, ଦେଖିଲେ ଯେ, ଭାରତର ନାନା ପ୍ରଦେଶରୁ ଯାତ୍ରୀମାନେ ରାମେଶ୍ୱରଙ୍କୁ ଦର୍ଶନ କରିବାକୁ ଆସିଅଛନ୍ତି । ତହିଁରୁ କେତେକ ହରିଦ୍ୱାରଠାରୁ ଗଙ୍ଗୋତ୍ରୀ ଆଣି ରାମେଶ୍ୱରଙ୍କୁ ଅଭିଷେକ କରନ୍ତି । କଳାବତୀ ମନେ ମନେ ଭାବନା କଲେ "ଭାରତୀୟମାନଙ୍କର ଈଶ୍ୱରଙ୍କଠାରେ ପ୍ରଗାଢ଼ ପ୍ରେମ ଓ ଭକ୍ତି । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ" । ଦିନେ ପ୍ରାତଃକାଳରେ ଈଶ୍ୱରଙ୍କୁ ଦର୍ଶନ କରିବାକୁ କଳାବତୀ ଯାଉଁ ଯାଉଁ ବାଟରେ ଜଣେ ସନ୍ନ୍ୟାସୀଙ୍କୁ ଦେଖିଲେ, ସେହି ସନ୍ନ୍ୟାସୀ କୌଣସି ଦିଗ ପ୍ରତି ଦୃଷ୍ଟିପାତ ନକରି ଆପଣା ନାସିକାଗ୍ରରେ ଦୃଷ୍ଟି ରଖି ଈଶ୍ୱର ଚିନ୍ତାରେ ନିମଗ୍ନ । କଳାବତୀ ତାହାଙ୍କୁ ଦଣ୍ଡପ୍ରଣାମ କରି ତାହାଙ୍କର ପାଦଧୂଳି ଭକ୍ତି ସହିତ ନିଜ ମସ୍ତକରେ ଧାରଣ କଲେ । ତଥିରେ ଈଶ୍ୱରଙ୍କୁ ଦର୍ଶନ କରି ବସାକୁ ବାହୁଡ଼ି ଆସିଲେ ।

କଳାବତୀ—ଇନ୍ଦୁମତି ! ସଂସାରରେ ଯେଉଁମାନେ ସନ୍ନ୍ୟାସ ଧର୍ମ ଆଚରଣ କରନ୍ତି, ସେମାନେ ପ୍ରକୃତ ସୁଖୀ ଅଟନ୍ତି ।

ଇନ୍ଦୁମତୀ—ସଖି ! ମୁଁ ବୁଝିପାରିଲି ନାହିଁ । କାହାକୁ ସନ୍ନ୍ୟାସ ଧର୍ମ କହନ୍ତି ? ସେହି ଧର୍ମ ଭଲରୂପେ ବୁଝାଇ ଦିଅନ୍ତୁ ।

କଳାବତୀ—ଇନ୍ଦୁମତି ! ଐହିକ ସମସ୍ତ ବିଷୟ ପରିତ୍ୟାଗ କରି ଈଶ୍ୱର ଚିନ୍ତାରେ କାଳ କାଟିବାର ଯେ ତାହାକୁ ସନ୍ନ୍ୟାସ ଧର୍ମ କହନ୍ତି ।

ଇନ୍ଦୁମତୀ—ଏଥର ବୁଝିଲି । ଯେଉଁମାନେ ଐହିକ ସୁଖର ବିନ୍ଦୁ ବିସର୍ଗ ଅନୁଭବ କରିନାହାନ୍ତି ସେମାନେ କଅଣ ପରିତ୍ୟାଗ କରିବେ ? କିପରି ସନ୍ନ୍ୟାସୀ ବା ସନ୍ନ୍ୟାସିନୀ ହେବେ ?

ଅତଏବ ସ୍ୱଧର୍ମାନୁସାରେ ସଂସାର ସୁଖ ଅନୁଭବ କରି ପରେ ସନ୍ନ୍ୟାସ ଧର୍ମ ଆଚରଣ କରିବା ବିଧେୟ ।

ଇନ୍ଦୁମତୀଙ୍କ ସାରବାକ୍ୟ ଶୁଣି କଳାବତୀ ଅତ୍ୟନ୍ତ ସନ୍ତୁଷ୍ଟା ହୋଇ ବୀମେଶ୍ୱର ପରିତ୍ୟାଗପୂର୍ବକ ବୋଧିନୀ ନଗର ଯିବାକୁ ମନ ବଳାଇଥିଲେ ।



# ତ୍ରୟୋଦଶ ପରିଚ୍ଛେଦ

## ବୋମ୍ବେର ଆଧୁନିକ ଅବସ୍ଥା

କଳାବତୀ କାର୍ଯ୍ୟବଶତଃ କେତେକାଳ ସେଠାରେ ଥାଇ ପରେ ରେଳପଥ ଦେଇ ବୋମ୍ବେ ନଗର ଯିବାବେଳେ ତାହାଙ୍କ ମନ ଦୁଃଖ ସାଗରରେ ନିମଗ୍ନ ଥିଲା । କାହାରି ସହ ବିଶେଷତଃ କଥୋପକଥନ କରନ୍ତି ନାହିଁ, କୌଣସି ଗୋଟିଏ ପାଠ୍ୟ ପୁସ୍ତକ ଧରି ତହିଁରେ କେତେ କାଳ ଯାପନ କରନ୍ତି; ଆଉ କେତେବେଳେ ଅଶ୍ରୁଗଳିତ ନୟନରେ କୌଣସି ଦିଗ ପ୍ରତି ଦୃଷ୍ଟିପାତ ନ କରି ତଳକୁ ଚାହିଁ ବସିଥାନ୍ତି; ଆଉ କେତେବେଳେ ବାହ୍ୟଜ୍ଞାନ ହରାଇ ବାଳିକାପରି ଏଣେ ତେଣେ ଚାହିଁ ସହଚରୀଙ୍କ ନାମ ଧରି ଡାକୁଥାନ୍ତି । ଇତ୍ୟବସରରେ ଡାକ୍ତର ବାହାଦୁରଙ୍କ ବାରିଷ୍ଟର ଗାଡଗିଲ୍‌ଙ୍କୁ ଅଙ୍ଗୁଳି ଦେଖାଇ ପଚାରିଲେ ।

"ଡାକ୍ତର ଏହି ପରମସୁନ୍ଦରୀ କିଏ ଆପଣ ଜାଣି ? ସେ କହିଲେ—ମହାଶୟ ! ଏ ଜଣେ ପଣ୍ଡିତା ଅବିବାହିତା ଯୁବତୀ ଦେଶ ପର୍ଯ୍ୟଟନ କରୁଅଛନ୍ତି । ମୁଁ ଏହାଙ୍କୁ ଗତ ଡିସେମ୍ବର ମାସରେ ମାନ୍ଦ୍ରାଜିରେ ଦେଖିଥିଲି । ଆସ ଏହାଙ୍କ ନିକଟରେ ବସି ମିଷ୍ଟାଳାପରେ କାଳଯାପନ କରିବା ।

ପରେ ଦୁହେଁ କଳାବତୀଙ୍କ ନିକଟରେ ସ୍ଥାନ ନେଲେ । ମାତ୍ର କଳାବତୀ ଦୁଃଖରେ ଜଡ଼ଭୂତା ହୋଇଅଛନ୍ତି । ବାହାଦୁରଙ୍କ କଳାବତୀଙ୍କ ନିକଟରେ ପରିଚୟ ଦେବା ସମୟରେ କଳାବତୀ ବାହ୍ୟଜ୍ଞାନଶୂନ୍ୟ ହୋଇଥିବା ଯୋଗୁଁ ବିହ୍ୱଳରେ ବାହାଦୁରଙ୍କଙ୍କ କରଧରି କ୍ରନ୍ଦନ କରି ପଚାରିଲେ, "ସହଚରୀ ଇନ୍ଦୁମତି ! ଏତେକାଳଯାଏ ମୋତେ ପରିତ୍ୟାଗ କରି କେଉଁଠି ଯାଇଥିଲ ? ମୁଁ ଜାଣି ତୁମ୍ଭକୁ କୌଣସି ପ୍ରକାର ଅନାଦର କରିନାହିଁ । ମୋଠାରେ କିଛି ଦୁଃଖବ କାହିଁକି" ? ଏବେ ବର୍ତ୍ତମାନ

କଳାବନ୍ତୀଙ୍କ ମୁଖରୁ ନିର୍ଗତ ହେବାର ଶୁଣି ବାହାଦୁରଜୀ ଚକିତ ଓ ଭୀତ ହେଲେ । ପରେ ଧୈର୍ଯ୍ୟାବଲମ୍ବନ କରି କହିଲେ ।

ବାହାଦୁରଜୀ – ମୁଁ ତୁମ୍ଭ ସହଚରୀ ନୁହେଁ । ଡ଼ାକ୍ତର ବାହାଦୁରଜୀ । ଏହା ଶୁଣି କଳାବନ୍ତୀ ସତର୍କ ହୋଇ ପଚାରିଲେ ।

କଳାବନ୍ତୀ—-ଆପଣ କେଣେ ଯାଇଥିଲ ? (ଅଙ୍ଗୁଳି ଦେଖାଇ) ଏ ଭଦ୍ରବ୍ୟକ୍ତି କିଏ ?

ବାହାଦୁରଜୀ—ଏ ଜଣେ ବାରିଷ୍ଟର । ଏହାଙ୍କ ନାମ ଗାଡ଼ଗିଲ୍ । ମୁଁ ପୁନା ଯାଇଥିଲି । ଏବେ ଆମ୍ଭେ ଦୁହେଁ ମିଶି ବୋମ୍ବେ ଯାଉଅଛୁ ।

କଳାବନ୍ତୀ—ମୁଁ ମଧ୍ୟ ତୁମ୍ଭମାନଙ୍କ ସଙ୍ଗେ ସଙ୍ଗୀ ହେବି ।

ବାହାଦୁରଜୀ – କଳାବନ୍ତୀ ! ତୁମ୍ଭ ସହଚରୀ କାହାନ୍ତି ?

କଳାବନ୍ତୀ – ସେ କଥା କାହିଁକି ପଚାରୁଅଛନ୍ତି ? ଆଉ ଜଳିବା ନିଆଁରେ କୁଟା ପକାନ୍ତୁ ନାହିଁ । ଶ୍ରୀ ରାମେଶ୍ୱରରେ ସେ ମାନବଲୀଳା ସମ୍ବରଣ କଲେ । ମୁଁ ଏକାକିନୀ ବୋମ୍ବେ ଯିବାକୁ ହେଉଥିଲି । ଭାଗ୍ୟବଶତଃ ଆପଣଙ୍କ ସଙ୍ଗ ପ୍ରାପ୍ତହେଲି ।

ଏପରି ସମୟରେ ରେଳଗାଡ଼ି ବୋମ୍ବେ ନଗରରେ ଉପସ୍ଥିତ ହେଲା । ସେହି ନଗରର ଶୋଭା ଦେଖିଲା ମାତ୍ରକେ କଳାବନ୍ତୀଙ୍କ ହୃଦୟରେ ଏପରି ଅପୂର୍ବ ଭାବ ଉଦୟ ହେଲା ଯେ ଏକାବେଳକେ ସମସ୍ତ ଦୁଃଖ ତିରୋହିତ ହେଲା ।

ଏହି ତିନିଜଣ ଗୋଟିଏ ଗାଡ଼ିରେ ବସି ବାହାଦୁରଜୀଙ୍କ ଗୃହ ପ୍ରତି ଯାଉଅଛନ୍ତି, ବାଟରେ ଯିବା ସମୟରେ କଳାବନ୍ତୀ ଜଣେ ରାଜପୁତ ଯୁବକ ପ୍ରତି ଦୃଷ୍ଟିପାତ କରି ତାହାଙ୍କ ମନୋହର ରୂପରେ ମୁଗ୍ଧ ହୋଇ ବାହାଦୁରଜୀଙ୍କୁ ପଚାରିଲେ ।

କଳାବନ୍ତୀ—ଏ ଭଦ୍ରବ୍ୟକ୍ତି କିଏ ? ଆପଣ ଜାଣନ୍ତି ?

ବାହାଦୁରଜୀ—ହଁ, ମୁଁ ଜାଣେ । ଏ ଜଣେ ରାଜପୁତ । ଏହାଙ୍କର ଜନ୍ମସ୍ଥାନ ରାଜପୁତାନା । ଏ ମହାତ୍ମା ଇଂଲଣ୍ଡ ଯାଇ ବାରିଷ୍ଟର ପରୀକ୍ଷାରେ

ଉତ୍ତୀର୍ଣ୍ଣ ହୋଇ ଏଠା ହାଇକୋର୍ଟରେ ଓକିଲ କାର୍ଯ୍ୟ କରୁଅଛନ୍ତି । ଏ ଜଣେ ମହାନ୍ ଧନୀ । ଏହାଙ୍କର କେଏ ନାହିଁ, ଏକାକୀ ଏଠାରେ ବାସ କରନ୍ତି । ଏହାଙ୍କ ନାମ ବଳଭଦ୍ର ସିଂହ ।

ପରେ ଏହି ତିନଜଣ ବାହାଦୁରଙ୍କଙ୍କ ଗୃହରେ ପ୍ରବେଶ କଲେ । ବାହାଦୁରଙ୍କଙ୍କ ସ୍ତ୍ରୀ ଶର ପରିଚିତ ଥିଲି ପରି କଳାବତୀଙ୍କୁ ସମାଦର କରି ତାହାଙ୍କ ସହିତ ମିଷ୍ଟାଳାପରେ କାଳଯାପନ କଲେ । ଦିନେ ସାୟଂକାଳ ସମୟରେ ଭ୍ରମଣାର୍ଥେ ବାହାଦୁରଙ୍କଙ୍କ ସହିତ କଳାବତୀ ଯାଉଅଛନ୍ତି । ଅଶ୍ୱଯାନ ମଲବାର ପାହାଡ଼ରେ ପ୍ରବେଶ ହେଲା । ସେଠାରେ କଳାବତୀ ଉତ୍ତୀର୍ଣ୍ଣ ହୋଇ ଏଣେତେଣେ ଭ୍ରମଣ କରି ଗଭର୍ଣ୍ଣମେଣ୍ଟ ଅଫିସ, ସିନେଟ ହାଲ ପ୍ରଭୃତି, ସେଠା ଗଭର୍ଣ୍ଣମେଣ୍ଟଙ୍କ ଆବାସର ଶୋଭା ସନ୍ଦର୍ଶନ କରି ଆନନ୍ଦିତ ହେଲେ । ପ୍ରତ୍ୟାଗମନ ସମୟରେ ଶ୍ୱେତଗଳି ଦେଇ ଯାଉଁ ଯାଉଁ କେତେ ଶ୍ୱେତାଙ୍ଗମାନଙ୍କର ଇଙ୍ଗିତ ଓ ହାସ୍ୟ ଦେଖି କଳାବତୀ ଲଜ୍ଜିତ ଏବଂ ଦୁଃଖିତ ହେଲେ; ତତ୍ପରେ ବସାରେ ପହୁଞ୍ଚିଲେ । ପରଦିନ ପ୍ରାତଃକାଳରେ ବାହାଦୁରଙ୍କଙ୍କ ଗୃହରେ ବାବୁ କଳାବତୀଙ୍କଠାରେ ପରିଚୟ ଦେଲେ । ଦୁହେଁ ମିଶି ନଗର ଭ୍ରମଣ କରିବା ସମୟରେ ଦେଖିଲେ ଯେ, କେଉଁଠାରେ କ୍ରୟ ବିକ୍ରୟ ଧୂମଧାମ ଲାଗିଅଛି, କେଉଁଠାରେ ସ୍ୱର୍ଣ୍ଣ ବଣିକମାନେ ନାନାପ୍ରକାର ଗହଣା ଗଠନ କରୁଅଛନ୍ତି ଏବଂ କେଉଁଠାରେ ମାରବାଡ଼ ଓ ରାଜପୁତମାନେ ନାନାପ୍ରକାର ପଣ୍ୟଦ୍ରବ୍ୟ ବିକ୍ରୟ କରିବାଲାଗି ଦୋକାନ ମେଲିଅଛନ୍ତି । ବଜାରମାନଙ୍କରେ ଖାଦ୍ୟୋପଯୋଗୀ ସକଳ ପଦାର୍ଥ ବିକ୍ରୀତ ହେଉଅଛି । ଦୂରରେ କଳାବତୀ ଧୂମ-ଜାଲ ଦେଖି ବାବୁଙ୍କୁ ପଚାରିଲେ ।

କଳାବତୀ—(ଅଙ୍ଗୁଳି ଦେଖାଇ) ଏ ଧୂମ-ଜାଲ କଣ ?

ବାବୁ—ଚାଲ ସେଠାକୁ ଯିବା । ଦେଖିଲେ ଆପଣଙ୍କୁ ଭଲରୂପେ ବୋଧ ହେବ ।

ଦୁହେଁ ସେଠାରେ ପହୁଞ୍ଚିଲେ । ସେଠା ସୂତ୍ର-କର୍ତ୍ତନ କଲମାନ ଦେଖି କଳାବତୀ ମନେ ମନେ ଭାବିଲେ ।

କଳାବନ୍ତ—ଏଠା ଲୋକମାନେ ଅତି ବୁଦ୍ଧିମାନ୍ ଓ ପରିଶ୍ରମୀ, ସର୍ବଦା ଧନ ଉପାର୍ଜନରେ ଚେଷ୍ଟା କରନ୍ତି । ଯେଉଁଠାରେ ଦେଖିଲେ ଲୋକେ ସର୍ବଦା କାର୍ଯ୍ୟରେ ରତ । ଅତଏବ ଏହି ନଗର ଲକ୍ଷ୍ମୀର ଆବାସ ସ୍ଥାନ ହୋଇଅଛି । ଦେଖିବାକୁ ଏହି ନଗରରେ ଗୋଟିଏ ଛପରବନ୍ଧ ଗୃହ ନାହିଁ । ଚକ୍ଷୁ ଖୋଲି ଦେଖିଲେ ଗୃହଆଡ଼େ ସୌଧାବଳୀ । ଶୁଭ୍ରତା ବିଷୟରେ ଭାରତର ଅନ୍ୟାନ୍ୟ ନଗରମାନଙ୍କ ସହିତ ଏହାକୁ ତୁଳନା କଲେ ସେମାନଙ୍କ ଅପେକ୍ଷା ଏ ଉତ୍କୃଷ୍ଟତର ଅଟେ । ତତ୍ପରେ ବାବୁ କଳାବନ୍ତଙ୍କୁ ବାହାଦୁରଙ୍କଙ୍କ ଗୃହଠାରେ ଛାଡ଼ିଦେଇ ଆପଣା ଗୃହକୁ ଗଲେ ।

ଲକ୍ଷ୍ମୀ—ଆଜି ଆପଣଙ୍କର ଏତେ ଡେରି କାହିଁକି ହୋଇଅଛି ?

ବାବୁ—କଳାବନ୍ତ ନାମ୍ନୀ ଜଣେ ଭଦ୍ରମହିଳା ଭାରତର କେତେ କେତେ ପ୍ରଦେଶ ପର୍ଯ୍ୟଟନ କରି ଭାଗ୍ୟବଶତଃ ଏଠାରେ ପ୍ରବେଶ ଲାଭ କରିଅଛନ୍ତି । ଏହି ସୁଶୀଳାଙ୍କ ସହିତ ମୁଁ ନଗର ଭ୍ରମଣ କରୁଥିଲି ।

ଲକ୍ଷ୍ମୀ—ସେ କେଉଁଠି ଗଲେ ? ତାହାଙ୍କୁ କାହିଁକି ଏଠାକୁ ଆଣିଲ ନାହିଁ ?

ବାବୁ—ସେ ସାଧାରଣ ମହିଳା ନୁହନ୍ତି । ସଦ୍‌ଗୁଣଶାଳିନୀ ମହିଳା-ମାନଙ୍କର ଶିରୋମଣି । ଇଂରାଜି ଓ ସଂସ୍କୃତ ବିଦ୍ୟାରେ ଅସାଧାରଣ ପଣ୍ଡିତା । ସେ ଏବେ ବାହାଦୁରଙ୍କଙ୍କ ଅତିଥି ହୋଇଅଛନ୍ତି । ଦିନେ ତାହାଙ୍କୁ ପ୍ରାର୍ଥନା କରି ଆମ୍ଭ ଗୃହକୁ ଡାକି ଆଣିବା ।

ଆଉ ଦିନେ ପ୍ରାତଃକାଳରେ କଳାବନ୍ତ ଗାଡ଼ଗିଲ୍‌ଙ୍କ ସହିତ ଭିକ୍ଟୋରିଆ ମିଉଜିଅମ୍ ଓ ଗଭର୍ଣ୍ଣମେଣ୍ଟ ଡାକୟାର୍ଡ଼ ଦେଖିବାକୁ ଯାଇଅଛନ୍ତି; ଏଣେ ବଳଭଦ୍ର ସିଂହ ବାହାଦୁରଙ୍କଙ୍କ ଗୃହଠାରେ ପ୍ରବେଶ ହୋଇ କଳାବନ୍ତଙ୍କ ବିଷୟରେ ଦୁହେଁ କଥୋପକଥନ କରୁଅଛନ୍ତି । ଭ୍ରମଣ କରି କରି କଳାବନ୍ତ ଗାଡ଼ଗିଲ୍‌ଙ୍କ ସହିତ ଆପଣା ବସାରେ ପ୍ରବେଶ ହେଲେ । କଳାବନ୍ତଙ୍କୁ ଦେଖି ବଳଭଦ୍ର ସିଂହ ଆପଣା ସ୍ଥାନରୁ ଉଠି ସମାଦରପୂର୍ବକ ତାହାଙ୍କୁ ଅନ୍ୟ ଚୌକିରେ ବସାଇ ସେ ଆପଣା ଚୌକିରେ ବସିଲେ । କିଛିକ୍ଷଣ କାଳଯାଏ ଦୁହେଁ ମିଷ୍ଟାଳାପରେ କାଳ କାଟିଲେ । ପରେ ବଳଭଦ୍ର ସିଂହ ବିଦାୟ ଗ୍ରହଣ କଲେ ।

ସେଦିନ ରାତ୍ର ଘ ୧୨ ଘଣ୍ଟା ସମୟରେ କଳାବତୀ ଜ୍ୱରରେ ପୀଡ଼ିତ । ବାହାଦୁରଜୀ ଓ ତୁଳସୀବାଈ କଳାବତୀଙ୍କ ଶୁଶ୍ରୂଷାରେ ଲାଗିଅଛନ୍ତି । ଆରଦିନ ପ୍ରାତଃକାଳ ଘ.୬ ଣ୍ଟା ସମୟରେ ବଳଭଦ୍ର ସିଂହ ସେଠାକୁ ଗଲେ । କଳାବତୀଙ୍କୁ ଜ୍ୱରରେ ପୀଡ଼ିତ ଥିବାର ଦେଖି ମନେ ମନେ ଅତି ଦୁଃଖିତ ହେଲେ; ଏବଂ ଯତ୍ନରେନାସ୍ତି ଶ୍ରମସ୍ୱୀକାର କରି ସେ ଜ୍ୱର ରୋଗରୁ ମୁକ୍ତ ହେବା ବିଷୟରେ ଚେଷ୍ଟାକଲେ । ଗୁରିଦିନ ପରେ କଳାବତୀ ସ୍ୱାସ୍ଥ୍ୟ ଲାଭ କଲେ । ପ୍ରତ୍ୟହ ଭ୍ରମଣ କରିବା ସମୟରେ କେବେ କେବେ ପ୍ରାତଃକାଳରେ ପ୍ରିନ୍‌ସିସ୍ ଡ଼କ୍ ଓ ଅପିଲୋ ବନ୍ଦର ଅଡ଼େ ଭ୍ରମଣ କରନ୍ତି । ସାୟଂକାଳ ସମୟରେ ନଗରର ଦୃଶ୍ୟ ପ୍ରଦେଶମାନଙ୍କ ପ୍ରତି ଭ୍ରମଣ କରନ୍ତି ।

ଦିନେ ପ୍ରାତଃକାଳ ଘ ୧୧ ଣ୍ଟା ସମୟରେ ବାହାଦୁରଜୀ ଓ କଳାବତୀ ଭୋଜନାଗାରରେ ବସି ;ଭୋଜନ କରୁଅଛନ୍ତି, ପ୍ରସଙ୍ଗବଶତଃ ବାହାଦୁରଜୀ କଳାବତୀଙ୍କୁ ପଚାରିଲେ ।

ବାହାଦୁର—ଆପଣ ଅନେକ ନଗର ଭ୍ରମଣ କରି ଆସିଅଛନ୍ତି । ସମ୍ପ୍ରତି ଏହି ନଗର ଭ୍ରମଣ ନିତ୍ୟ କରୁଅଛନ୍ତି । ଆପଣଙ୍କ ମତରେ ଏ ନଗର କିପରି ଅଟେ ?

କଳାବତୀ—ମୁଁ ଦିଲ୍ଲୀ, କାଶୀ, ଆଗ୍ରା ଓ କଲିକତା ପ୍ରଭୃତି ନଗରମାନ ଭ୍ରମଣ କରିଅଛି, କିନ୍ତୁ ଶୋଭାରେ ଏହି ନଗର ସହିତ କିଏ ସମାନ ହେବନାହିଁ । ବୋମ୍ବେ ଭାରତମାତାଙ୍କର ଚକ୍ଷୁ । ଏପରି କହିଲେ ମଧ୍ୟ ଅତ୍ୟୁକ୍ତି ହେବନାହିଁ । ଜନସଂଖ୍ୟାରେ, ବାଣିଜ୍ୟରେ, ପରିଶ୍ରମରେ, ଉତ୍ସାହରେ ଏବଂ ପରିଶୁଦ୍ଧତାରେ ଏହା ସହିତ ସମାନ ହେବା ଆଉ ଗୋଟିଏ ନଗର ଭାରତରେ ଦେଖିବାକୁ ଦୁର୍ଲଭ । ଭାଗ୍ୟହିଲେ ଲୋକେ ଏଠାରେ ବାସ କରନ୍ତି ।

ବାହାଦୁର – କଳାବତି ! କାହିଁକି ଚିନ୍ତା କରୁଅଛ ? ଆପଣ ମଧ୍ୟ ସୁଖରେ ଏଠାରେ ଘର କରିବାକୁ ହେବ ।

କଳାବତୀ—ଏ ଆପଣଙ୍କ ମନ ଗଢ଼ା କଥା । କିନ୍ତୁ ନଜାଣି କାହିଁକି ଏପରି କହୁ ଅଛନ୍ତି ?

ବାହାଦୁର—ତୁମ୍ଭେ କୋପ କରିବ ବୋଲି ମୁଁ କହୁ ନଥିଲି । ଏବେ ତୁମ୍ଭ ମନ ଜାଣିଲି । ଆପଣ ମନଦେଇ ଶୁଣନ୍ତୁ । ବଳଭଦ୍ରସିଂହ ଆପଣଙ୍କର ପାଣିଗ୍ରହଣ କରିବାକୁ ଚେଷ୍ଟା କରୁଅଛନ୍ତି । ଏଥି ବିଷୟରେ ଆପଣଙ୍କ ଅଭିମତ କି ?

କଳାବତୀ—ଆପଣଙ୍କ ଇଚ୍ଛା । ଯେଉଁଦିନୁ ଇନ୍ଦୁମତୀଙ୍କୁ ହରାଇଦେଲି ତଦବଧି ଆପଣଙ୍କୁ ଭ୍ରାତୃ ରୂପେ ମଣିଅଛି ।

ତହିଁ ଉତ୍ତାରୁ କଳାବତୀଙ୍କ ଶ୍ରୀମୁଖ ଦିନକୁ ଦିନ ନବଶଶିକଳାପରି ପରିବର୍ଦ୍ଧିତ ହେଉଥିଲା । ଯେଣେ ବଳଭଦ୍ରସିଂହ ବିବାହ ସ୍ଥିର ହେବାର ବାହାଦୁରଜୀଙ୍କଠାରୁ ଶୁଣି କଲ୍ୟାଣ ମଣ୍ଡପ ତିଆର କରାଉଥିଲେ । ଆପଣାର ଗୃହ ନୂତନରେ ସଜ୍ଜିତ ହୋଇ ସଭାଗୃହରେ ଝାଡ଼ ଆଲୁଅ ଟଣା ହୋଇ ନାନା ବର୍ଣ୍ଣର କାଚରେ ମଣ୍ଡିତ ହୋଇଥିଲା; ଏବଂ ସଭାସ୍ଥଳ ଶତରଞ୍ଜି ଓ ଫରାସରେ ଆଚ୍ଛାଦିତ । ଲୋକମାନେ ଏପରି ଢଙ୍ଗରେ ରଚନା ହୋଇଥିଲା ଯେ, ସେ ସଭାଗୃହକୁ ଦେଖିଲା ମାତ୍ରକେ ଇନ୍ଦ୍ରଭୁବନ ପରି ପ୍ରତୀତ ହେଉଥିଲା । ରାଜପଥରେ ଯିବା ଭଦ୍ରବ୍ୟକ୍ତିମାନେ ବଳଭଦ୍ରସିଂହଙ୍କ ଗୃହପ୍ରତି ଚାହିଁ ମନେ ମନେ ବିଚାର କରନ୍ତି । "ବଳଭଦ୍ର ସିଂହଙ୍କ ଗୃହରେ ଉତ୍ସବ ହେବ ପରା ? ଏଣୁ ଗୃହ ସଂସ୍କାର କଲ୍ୟାଣ ମଣ୍ଡପ ତିଆର ଲାଗିଅଛି, କେତେ କେତେ ସଭ୍ୟ ମଣ୍ଡଳୀରେ ଭ୍ରମଣ କରିବା ପାରସୀ ମହିଳାମାନେ ମନେ ମନେ ବିଚାର କରନ୍ତି । ବଳଭଦ୍ରସିଂହ ଆଜଯାଏ ବିବାହ କରି ନାହାନ୍ତି । ଏବେ ତାହାଙ୍କ ବିବାହ କାର୍ଯ୍ୟ ନିକଟ ହୋଇଥିବ । ଏହି ଗୃହ ସଂସ୍କାର ଏହି କଲ୍ୟାଣ ମଣ୍ଡପ ତାହାର ପରିଚୟ ଦେଉଅଛି ।"

୧୮୯୫ ସାଲ ଜୁଲାଇ ମାସର ତା ୭ ଦିନରେ ବିବାହ ସ୍ଥିର ହେଲା । ରାଜପୁତ ପାରସୀ ଓ ଇଉରୋପୀୟାନ ଭଦ୍ର ସନ୍ତାନମାନେ ବଳଭଦ୍ରସିଂହଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ତାହାଙ୍କ ଗୃହଦ୍ୱାରରେ ଉପସ୍ଥିତ ଅଛନ୍ତି । ଏମାନଙ୍କ ସମକ୍ଷରେ ହିନ୍ଦୁଧର୍ମାନୁସାରେ ବଳଭଦ୍ରସିଂହ କଳାବତୀଙ୍କ ପାଣିଗ୍ରହଣ

କଲେ । ପରେ ସଭ୍ୟମାନେ ସମ୍ମାନିତ ହୋଇ ଆପଣା ଆପଣା ଗୃହକୁ ବାହାରିଗଲେ । କଳାବତୀ ତଦବଧି ଆନନ୍ଦରେ ନିଜ ପତି ସହିତ କାଳଯାପନ କରୁଥାନ୍ତି । ସବଦା ନୂତନ ବହିମାନ ପଢୁଥାନ୍ତି । ସମୟ ସମୟରେ ଧର୍ମପୁସ୍ତକମାନ ଅଧ୍ୟୟନ କରନ୍ତି ।

ଦିନେ କଳାବତୀ କୌତୁକରେ ପାରସୀ ସ୍ତ୍ରୀମାନଙ୍କର ଶୋଭା ସନ୍ଦର୍ଶନ କରି ଏମାନଙ୍କର ଇତିହାସ ଆପଣା ପତିଙ୍କୁ ପଚାରିବାରୁ ବଳଭଦ୍ରସିଂହ କହିଲେ ।

ବଳଭଦ୍ରସିଂହ—ଏହି ପାରସୀମାନେ ପାରସିକ ଆଦିମ ନିବାସୀ-ମାନଙ୍କର ସନ୍ତତି ଅଟନ୍ତି । ଏମାନେ ପ୍ରାୟ ୧୨୦୦ ବର୍ଷ ତଳେ ସୁରଟ-ଠାରେ ଉପନିବେଶ ସଂସ୍ଥାପନ କଲେ । ଏମାନେ ବଳ, ବୀର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଇଂରେଜି ବିଦ୍ୟାରେ ଅନ୍ୟାନ୍ୟ ଜାତିମାନଙ୍କ ଅପେକ୍ଷା ଉତ୍କୃଷ୍ଟତର ଅଟନ୍ତି । ଏମାନେ ଦେଶ ପର୍ଯ୍ୟଟକ ଓ ଦେଶପ୍ରେମୀ । ବାଣିଜ୍ୟ କରିବା ଯୋଗୁଁ ଏମାନେ ଧନୀ ହୋଇଅଛନ୍ତି । ଅଗ୍ନିପୂଜା ଏମାନଙ୍କର ପ୍ରଧାନ ଧର୍ମ ।

ତଦ୍‌ବାଦ କଳାବତୀ ପ୍ରାୟ ବର୍ଷେ ଯାଏ ଆପଣା ପତିଙ୍କ ସହିତ ସୁଖରେ କାଳ କାଟିଲେ । କେତେବେଳେ ନଗର ଭ୍ରମଣ, ଆଉ କେତେବେଳେ ସଭାମାନଙ୍କରେ ଉପସ୍ଥିତ ହୋଇ ବକ୍ତୃତା ପ୍ରଦାନ କରୁଥାନ୍ତି । ହିନ୍ଦୁ ବାଳିକାମାନଙ୍କୁ ବିଦ୍ୟାଶିକ୍ଷା ଦେବାରେ ତାହାଙ୍କର ପ୍ରଧାନ ଯତ୍ନ ଥିଲା । ଏହି ବିଷୟ ଧେନ ବନ୍ଦରଖାରଙ୍କ ସହିତ ବୋମ୍ବେର ନାନା ସ୍ଥାନରେ ପ୍ରବେଶ ହୋଇ ବକ୍ତୃତା ପ୍ରଦାନ କରୁଥାନ୍ତି । ବାଳକ ଓ ବାଳିକାମାନଙ୍କୁ ଉତ୍ସାହ ଦେବାଲାଗି ଦିନେ ଦିନେ କଲେଜ ଓ ପାଠଶାଳା-ମାନଙ୍କୁ ଯାଇ ପୁରସ୍କାର ପ୍ରଦାନ କରୁଥାନ୍ତି । ଗରିବ ଲୋକମାନଙ୍କୁ ନିଜ ହସ୍ତରୁ ପୁସ୍ତକ, ବେତନ ଓ ବସ୍ତ୍ର ପ୍ରଦାନ କରୁଥାନ୍ତି । ଏହିପରି ଆନନ୍ଦରେ କାଳ କାଟୁଥିବା ସମୟରେ ବୋମ୍ବେ ନଗରରେ ପ୍ଲେଗ (ମହାମାରୀ) ଭୀଷଣାକାର ଧାରଣ କରି ବୋମ୍ବେ ନଗରକୁ ଅସ୍ତବ୍ୟସ୍ତ କରି ଦେଉଥିଲା । ଏହି ରୋଗରେ ଉପଶମନାର୍ଥେ ସ୍ଥାନୀୟ ଗଭର୍ଣ୍ଣମେଣ୍ଟ ଅନେକ ଉପାୟ ଚେଷ୍ଟା କରୁଥିଲେ । ବୋମ୍ବେ ଗଭର୍ଣ୍ଣର ମାନ୍ୟବର ସେଣ୍ଡହାର୍ଷ୍ଟ ସାହେବ ପରିଶ୍ରମ

ସ୍ୱୀକାର କରି ଜନସାଧାରଣଙ୍କ ମଙ୍ଗଳ ଲାଗି ଅଟେ କାର୍ଯ୍ୟ କରୁଥାନ୍ତି । ଏହି ରୋଗରେ ପୀଡ଼ିତ ହେବା ଲୋକଙ୍କୁ ସେଗ୍ରିଗେଷନ୍ କେମ୍ପ୍‌କୁ ପଠାଇ ସେମାନଙ୍କୁ ଚିକିତ୍ସା କରାଉଥାନ୍ତି । କେତେ ଉପାୟ କଲେ ହେଁ ଏହି ରୋଗ ଉପଶମନ ହୋଇପାରିଲା ନାହିଁ । କ୍ରମଶଃ ଏହା ବୃଦ୍ଧି ଲାଭ କରି ସମଗ୍ର ଭାରତକୁ କରି କବଳିତ କରିବାକୁ ବାହାରିଲାପରି ପ୍ରତୀତ ଜନ୍ମାଇଲା ।

ଏହି ରୋଗର ପ୍ରାଦୁର୍ଭାବ ଏପରି ଥିବା ସମୟରେ ମଧ୍ୟପ୍ରଦେଶରେ ଏବଂ ମାନ୍ଦ୍ରାଜ ରାଜ୍ୟର କେତେକ ପ୍ରଦେଶରେ ଦୁର୍ଭିକ୍ଷ ଉପସ୍ଥିତ ହୋଇଥିଲା । ଏହି ଦୁର୍ଭିକ୍ଷ ଯୋଗୁଁ ଅନେକେ ମରିଯାଉଥିଲେ । ପ୍ରଥମରେ ସ୍ଥାନୀୟ ଗଭର୍ଣ୍ଣମେଣ୍ଟ ଏଥି ବିଷୟରେ ଜାଗ୍ରତ ହୋଇ ନଥିଲେ । ଯେତେ ବେଳେ ଦୁର୍ଭିକ୍ଷ ପ୍ରବଳ ହେଲା, ସେତେବେଳେ ଗଭର୍ଣ୍ଣମେଣ୍ଟ ଲୋକମାନଙ୍କୁ ଏହି ଦୁର୍ଭିକ୍ଷରୁ ରକ୍ଷା କରିବା ଲାଗି ନାନାପ୍ରକାର ଉପାୟ ଚେଷ୍ଟା କଲେ, ତଥାପି ଅନାଭାବରୁ ମଧ୍ୟପ୍ରଦେଶରେ ଅନେକେ ମୃତ ହେଲେ । ଯେଉଁମାନେ ପ୍ରାଣରେ ଥିଲେ ସେମାନଙ୍କର କଙ୍କାଳମାତ୍ର ଅବଶିଷ୍ଟ ଥିଲା । କେନେ ଖାଇବାକୁ କିଛି ନ ମିଳିବା ହେତୁ କେତେ ଜଣ ଗୋଟିଏ ମୃତ ବ୍ୟାଘ୍ରର ମାଂସ ଖାଉଥିଲେ । ଏହି ଦୁର୍ଭିକ୍ଷ ସମୟରେ ଇଂଲଣ୍ଡ ସାହାଯ୍ୟ କରୁଥିବାର ଦେଖି ଆମେରିକା ଲୋକେ ମଧ୍ୟ ଏମାନଙ୍କ ଦୁଃଖ ସହ୍ୟ କରି ନପାରି ପ୍ରଚୁର ଧନ ପ୍ରଦାନ କରିଥିଲେ ।

ଏହା ଏପରି ଥାଉ ଥାଉ ପୁନା ନଗରରେ ଲୋକେ ପ୍ଲେଗ ରୋଗରେ ପୀଡ଼ିତ ହୋଇ ପ୍ରତ୍ୟହ ଶତ ଶତ ମୃତ୍ୟୁମୁଖରେ ପଡ଼ୁଥାନ୍ତି । ଗୋରା ସିପାହିମାନେ ପୁନା ନଗରରେ ହିନ୍ଦୁସ୍ତ୍ରୀମାନଙ୍କୁ ବଳପୂର୍ବକ ଆକ୍ରମଣ କଲେ ବୋଲି ଗୋଟିଏ ପ୍ରବାଦ ଘଟିଥିଲା । କେତେଦିନ ପରେ ରେଣ୍ଡ ଓ ଏବରଷ୍ଟ ନାମକ ଦୁଇଜଣ ସାହେବ ସାୟଂକାଳ ଘ ୮ ଣ୍ଟା ସମୟରେ ରାଜପଥଦେଇ ଯାଉ ଯାଉ ସେ ଦୁଇ ଜଣଙ୍କୁ କେହିଜଣେ ଦୁରାତ୍ମା ମାରିପକାଇଲା । ସେ ଦୁଇ ଜଣରୁ ଜଣେ କଲଟେର ଓ ଆଉ ଜଣେ କର୍ଣ୍ଣେଲ । ଏହି ଦୁଇଜଣଙ୍କ ମରଣ ଭାରତକୁ ପ୍ଲେଗ ଓ ଦୁର୍ଭିକ୍ଷ ଅପେକ୍ଷା ଅନେକ ଅନିଷ୍ଟ ଘଟାଇଅଛି । ଏହି ଯୋଗୁଁ ନାତୁ ଭାଇମାନଙ୍କୁ ବନ୍ଧ ରଖିଥିଲେ ।

ଇତି ମଧ୍ୟରେ ପୁନା ଜନସାଧାରଣଙ୍କ ନେତା ଶ୍ରୀ ବାଳଗଙ୍ଗାଧର ତିଳକ, ତାହାଙ୍କର ମରହଟ୍ଟା ଖବରକାଗଜରେ ଇଂରେଜମାନଙ୍କୁ ଲକ୍ଷ୍ୟକରି ସେମାନଙ୍କ ବିରୁଦ୍ଧରେ କଟୁ ଲେଖିଥିଲେ ବୋଲି ଏବଂ ଶିବଜୀ ଉତ୍ସବରେ ଏହି ମହାତ୍ମା ପୁନାବାସିମାନଙ୍କୁ ଉତ୍ତେଜନା ପ୍ରଦାନ କରୁଥାନ୍ତି ବୋଲି ଏହାଙ୍କୁ ମଧ୍ୟ କାରାଗୃହ ପ୍ରାପ୍ତ ହୋଇଥିଲା ।

ଏଣେ ପୋଲିସର ଅନୁସନ୍ଧାନ ଲାଗିଥାଏ । କଳାବତୀ ଏହି ସମସ୍ତ ବିଷୟ ଖବରକାଗଜମାନଙ୍କରେ ପାଠକରି ଚିନ୍ତାରେ ମନ ଶୁଖାଇ ବସିଥାନ୍ତି । ଏଣେ ଦୁର୍ଭିକ୍ଷ ଉପଲକ୍ଷେ ବୋମ୍ବେ ନଗରରେ ଗୋଟିଏ ବୃହତ୍ ଅଧିବେଶନ ହୋଇଥିଲା । ସେଠାରେ କଳାବତୀ ନିଜ ପତିଙ୍କ ସହିତ ପ୍ରବେଶ ହୋଇଥିଲେ । ମଧ୍ୟପ୍ରଦେଶ ଅଧିବାସିମାନଙ୍କୁ ସାହାଯ୍ୟ କରିବା ଲାଗି ଚାନ୍ଦା ସଂଗ୍ରହ କରୁଥିବା ସମୟରେ କଳାବତୀ ଏବଂ ତାହାଙ୍କର ପତି ପ୍ରଚୁର ଧନ ପ୍ରଦାନ କରିଥିଲେ ।



# ଚତୁର୍ଦ୍ଦଶ ପରିଚ୍ଛେଦ

## ସଂସାର ସୁଖ କ୍ଷଣସ୍ଥାୟୀ ଏବଂ ଅଳୀକ

କେତେକାଳ ପରେ ପୋଲିସ୍ ଅନ୍ୱେଷଣରେ ଦାମୋଦର ଚୂପକାର ଏବଂ ତାହାର ଭାଇ ରେଣ୍ଡ ଏବଂ ଏବରଷ୍ଟ ନାମକ ଦୁଇଜଣ ସାହେବଙ୍କୁ ପ୍ରାଣ ହତ୍ୟା କରିଅଛନ୍ତି ବୋଲି ସ୍ଥିର ହେଲା । ହାଇକୋର୍ଟ ବିଚାରରେ ଏହି ଦୁଇଭାଇ ଅପରାଧୀ ହେବାରୁ ଏହାଙ୍କୁ ଫାଶୀ ଦିଆଗଲା । ତିଳକ ଛଅମାସ କାରାଗୃହରେ ରହିଲେ ଉତ୍ତାରୁ ଭାରତୀୟ ଭଦ୍ରବ୍ୟକ୍ତିମାନଙ୍କର ପ୍ରାର୍ଥନାରେ ଦୟାଳୁ ଗଭର୍ଣ୍ଣମେଣ୍ଟ ତାହାଙ୍କୁ କାରାଗୃହରୁ ମୁକ୍ତ କରିଦେଲେ । ଭାରତ ଏପରି ବିପଦରେ ଅବସ୍ଥିତ ଥିବା ସମୟରେ ବଳଭଦ୍ର ସିଂହଙ୍କୁ ପ୍ଲେଗରୋଗ ଆକ୍ରମଣ କଲା । ଏହି ରୋଗରୁ ତାହାଙ୍କୁ ମୁକ୍ତ କରିବାଲାଗି କଳାବତୀ ଅନେକ ଧନ ବ୍ୟୟକରି ଶିକ୍ଷିତ ଡାକ୍ତରମାନଙ୍କୁ ଅଣାଇ ତାହାଙ୍କର ଚିକିତ୍ସା କରାଉଥିଲେ । ଆପଣା ପତିର ଦୁଃଖ ସହ୍ୟ କରି ନପାରି କଳାବତୀ ଅନାହାରରେ ଏବଂ ଅଶ୍ରୁପୂର୍ଣ୍ଣ ନୟନରେ ନିରତ ଈଶ୍ୱର ଚିନ୍ତା କରୁଥାନ୍ତି; ପତି ସେବାରେ କଦାପି ତ୍ରୁଟି କରୁନଥାନ୍ତି । ସାତଦିନ ପରେ ବଳଭଦ୍ରସିଂହ ମାନବଲୀଳା ସମ୍ୱରଣ କଲେ । ନିଜ ପତିର ମରଣରେ କଳାବତୀ ହତଚେତ ହେଲେ । ବାହ୍ୟଜ୍ଞାନ ହରାଇ ପଡ଼ିଥିବା ସମୟରେ ସେଠା ଭଦ୍ରବ୍ୟକ୍ତିମାନେ ତାହାଙ୍କ ନିକଟରେ ପ୍ରବେଶ ହୋଇ ତାହାଙ୍କ ଦୁଃଖ ଉପଶମନାର୍ଥେ ଅନେକ ସାନ୍ତ୍ୱନା ଜନିତ ମିଷ୍ଟବାକ୍ୟମାନ କହିଲେ; ତଥାପି ତାହାଙ୍କ ଦୁଃଖ ଶାନ୍ତ ହେଲା ନାହିଁ । "ମୁଁ ଏପରି ହତଭାଗିନୀ ଯେ ଯୌବନାବସ୍ଥାରେ ପଦାର୍ପଣ କରିବା ସମୟରେ, ମାତାପିତାଙ୍କୁ ପରିତ୍ୟାଗ କରି ସହଚରୀଙ୍କ ସହିତ ଦେଶ ଭ୍ରମଣ କରୁଥିଲି ସେ ମଧ୍ୟ ମୋ ଅଦୃଷ୍ଟକୁ ଚାହିଁ ମାନବଲୀଳା ପରିତ୍ୟାଗ କଲେ । ପରେ ସୁବିଦ୍ୱାନ୍ ଧର୍ମ ଓ ସତ୍କୁଳ-ପ୍ରସୂତ ପତିଙ୍କୁ ପାଇ ସୁଖରେ କାଳଯାପନ କରିପାରିଲି ନାହିଁ । ଅଳ୍ପ କାଳରେ ସେ ମଧ୍ୟ ସଂସାର ସୁଖରେ ଜଳାଞ୍ଜଳି ପ୍ରଦାନ କରି ସ୍ୱର୍ଗସୁଖ

ଅନୁଭବ କରିବାଲାଗି ଯାଇଅଛନ୍ତି । ଏଣିକି ମୋ ଗତି କଅଣ ହେବ ?"
ଏପରି ବିଳାପ କରି କରି ତନ୍ମନସ୍କା ହୋଇ ଈଶ୍ୱରଙ୍କୁ ଧ୍ୟାନ କଲେ ।
ପରେ କଳାବତୀ ଆପଣା ପତିର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କରି
ତାହାଙ୍କଠାରେ ଯେତେ ଧନ ଥିଲା ତହିଁରୁ ବାଳିକାମାନଙ୍କ ବିଦ୍ୟା
ବିଷୟରେ ଅର୍ଦ୍ଧେ ଧନ ପ୍ରଦାନ କଲେ । ଅବଶିଷ୍ଟ ଧନ ଦୁଃଖୀ ଦରିଦ୍ର
ଦୁର୍ଭିକ୍ଷ ପୀଡ଼ିତ ବ୍ୟକ୍ତିମାନଙ୍କୁ ପ୍ରଦାନ କରିଦେଇ ସନ୍ନ୍ୟାସ ଧର୍ମ ଅବଲମ୍ବନ
କରିବାକୁ ଦୃଢ଼ ସଙ୍କଳ୍ପ କଲେ ।

"ଏହି ସଂସାର କେବଳ ଦୁଃଖମୟ । ଏଥିରେ ଲେଶ ମାତ୍ର ସୁଖ
ନାହିଁ । କାମ, କ୍ରୋଧ, ଦ୍ୱେଷ ଓ ହିଂସା ପ୍ରଭୃତିରେ ପୂର୍ଣ୍ଣ । ଏହି ସଂସାର ସୁଖ
କେବଳ କ୍ଷଣ ସ୍ଥାୟୀ । ଏଥିରେ ଯେଉଁମାନେ ଭୁଲନ୍ତି ସେମାନେ ଯଥାର୍ଥ ସୁଖ
ଜାଣନ୍ତି ନାହିଁ । ନାନା ଯନ୍ତ୍ରଣାରେ ପୀଡ଼ିତ ହୋଇ ପରେ ଅଶେଷ ଦୁଃଖ
ଭୋଗ କରନ୍ତି । ସଂସାରରେ ଧନୀ, ଦରିଦ୍ର, ପଣ୍ଡିତ, ମୂର୍ଖ ସୁଖୀ ଓ ଦୁଃଖୀ ଏହି
ଯେଉଁ ପ୍ରଭେଦ ଅଛି ଏମାନଙ୍କର ଶେଷ ଦଶା ସମାନ । ଯେଉଁମାନେ ଏହି
ସଂସାର ବିଷୟମାନଙ୍କୁ ତ୍ୟାଗକରି ସର୍ବଦା ଈଶ୍ୱର ଚିନ୍ତାରେ ନିମଗ୍ନ ଥା'ନ୍ତି
ସେମାନେ ପ୍ରକୃତ ସୁଖୀ ଏବଂ ସେମାନଙ୍କ ଜନ୍ମ ଧନ୍ୟ । ଅତଏବ ଏହି
ସଂସାରରେ ମୋହର କିଛି କାର୍ଯ୍ୟ ନାହିଁ । ଯାହା ଅନୁଭବ କରିବାକୁ ଥିଲା
ତାହା ଶେଷ ହୋଇଅଛି । ସଂପ୍ରତି ଈଶ୍ୱର ଚିନ୍ତାରେ କାଳ କାଟିବି ।"
ଏହା ଚିନ୍ତାକରି ପରିଶେଷରେ ହିମବନ୍ତ ପର୍ବତର ଏକ ପାର୍ଶ୍ୱରେ ବସି
ଯୋଗାଭ୍ୟାସରେ କାଳାତିପାତ କଲେ ।

